# ଅଥ ସପ୍ତମୋଽଧ୍ୟାୟଃ

## ଅବଧୂତୋପାଖ୍ୟାନ ଆରମ୍ଭ; ପୃଥିବୀଠାରୁ ଆରମ୍ଭ କରି କପୋତ ପର୍ଯ୍ୟନ୍ତ ଆଠ ଗୁରୁଙ୍କ କଥା

*ଶ୍ରୀଭଗବାନୁବାଚ*

ଯଦାତ୍ଥ ମାଂ ମହାଭାଗ ତଚ୍ଚିକୀର୍ଷିତମେବ ମେ ।
ବ୍ରହ୍ମା ଭବୋ ଲୋକପାଲାଃ ସ୍ୱର୍ବାସଂ ମେଽଭିକାଙ୍‌କ୍ଷିଣଃ ॥ ୧

ମୟା ନିଷ୍ପାଦିତଂ ହ୍ୟତ୍ର ଦେବକାର୍ଯ୍ୟମଶେଷତଃ ।
ଯଦର୍ଥମବତୀର୍ଣ୍ଣୋଽହମଂଶେନ ବ୍ରହ୍ମଣାର୍ଥିତଃ ॥ ୨

କୁଳଂ ବୈ ଶାପନିର୍ଦ୍ଦଗ୍ଧଂ ନଙ୍‌କ୍ଷ୍ୟତ୍ୟନ୍ୟୋନ୍ୟବିଗ୍ରହାତ୍ ।
ସମୁଦ୍ରଃ ସପ୍ତମେଽହ୍ନ୍ୟେତାଂ ପୁରୀଂ ଚ ପ୍ଳାବୟିଷ୍ୟତି ॥ ୩

ଯର୍ହ୍ୟେବାୟଂ ମୟା ତ୍ୟକ୍ତୋ ଲୋକୋଽୟଂ ନଷ୍ଟମଙ୍ଗଳଃ ।
ଭବିଷ୍ୟତ୍ୟଚିରାତ୍ ସାଧୋ କଳିନାପି ନିରାକୃତଃ ॥ ୪

ନ ବସ୍ତବ୍ୟଂ ତ୍ୱୟୈବେହ ମୟା ତ୍ୟକ୍ତେ ମହୀତଳେ ।
ଜନୋଽଧର୍ମରୁଚିର୍ଭଦ୍ର ଭବିଷ୍ୟତି କଳୌ ଯୁଗେ ॥ ୫

ତ୍ୱଂ ତୁ ସର୍ବଂ ପରିତ୍ୟଜ୍ୟ ସ୍ନେହଂ ସ୍ୱଜନବନ୍ଧୁଷୁ ।
ମୟ୍ୟାବେଶ୍ୟ ମନଃ ସମ୍ୟକ୍ ସମଦୃଗ୍ ବିଚରସ୍ୱ ଗାମ୍ ॥ ୬

ଯଦିଦଂ ମନସା ବାଚା ଚକ୍ଷୁର୍ଭ୍ୟାଂ ଶ୍ରବଣାଦିଭିଃ ।
ନଶ୍ୱରଂ ଗୃହ୍ୟମାଣଂ ଚ ବିଦ୍ଧି ମାୟାମନୋମୟମ୍ ॥ ୭

ପୁଂସୋଽଯୁକ୍ତସ୍ୟ ନାନାର୍ଥୋ ଭ୍ରମଃ ସ ଗୁଣଦୋଷଭାକ୍ ।
କର୍ମାକର୍ମବିକର୍ମେତି ଗୁଣଦୋଷଧିୟୋ ଭିଦା ॥ ୮

**ଭଗବାନ ଶ୍ରୀକୃଷ୍ଣ କହିଲେ**—ହେ ମହାଭାଗ୍ୟବାନ୍ ଉଦ୍ଧବ ! ତୁମେ ମୋତେ ଯାହା କହିଲ, ମୁଁ ତାହା ହିଁ କରିବାକୁ ଚାହୁଁଛି । ବ୍ରହ୍ମା, ଶିବ ଓ ଇନ୍ଦ୍ରାଦି ଲୋକପାଳ ମଧ୍ୟ ଚାହାନ୍ତି ଯେ, ମୁଁ ଏଥର ସେମାନଙ୍କର ଲୋକ ଦେଇ ମୋର ନିଜ ଧାମକୁ ଫେରିଯାଏ ॥ ୧ ॥ ବ୍ରହ୍ମା ପ୍ରାର୍ଥନା କରିବାରୁ ମୁଁ ମୋର ଅଂଶ ବଳରାମଙ୍କ ସହିତ ଏହି ଭୂତଳରେ ଅବତାର ଗ୍ରହଣ କରିଥିଲି ଏବଂ ଦେବତାମାନଙ୍କର ଯାହା କିଛି କାର୍ଯ୍ୟ ଥିଲା, ତାହା ପୂରାପୂରି ସମ୍ପନ୍ନ କରିଦେଇଛି ॥ ୨ ॥ ବ୍ରାହ୍ମଣଙ୍କ ଶାପରେ ଭସ୍ମ ହୋଇଯାଇଥିବା ଏହି ଯଦୁବଂଶ ଏଥର ପାରସ୍ପରିକ କଳହ ଓ ଯୁଦ୍ଧରେ ନଷ୍ଟ ହୋଇଯିବ । ଆଉ ସାତ ଦିନ ପରେ ସମୁଦ୍ର ମାଡ଼ିଆସି ଏହି ଦ୍ୱାରକାପୁରୀକୁ ମଧ୍ୟ ବୁଡ଼ାଇଦେବ ॥ ୩ ॥

ପ୍ରିୟ ଉଦ୍ଧବ ! ମୁଁ ମର୍ତ୍ତ୍ୟଲୋକ ପରିତ୍ୟାଗ କରିବାକ୍ଷଣି, ଏହାର ସକଳ ମଙ୍ଗଳ ନଷ୍ଟ ହୋଇଯିବ ଏବଂ ଅଳ୍ପଦିନ ମଧ୍ୟରେ କଳିଯୁଗ ସମସ୍ତଙ୍କୁ ପୂରାପୂରି ତାର ଅଧୀନ କରିଦେବ ॥ ୪ ॥ ମୁଁ ଏହି ପୃଥିବୀ ତ୍ୟାଗ କରିଦେବା ପରେ ତୁମେ ଆଉ ଏଠାରେ ରହିବ ନାହିଁ; କାରଣ ହେ ସାଧୁ ଉଦ୍ଧବ ! କଳିଯୁଗରେ ଅଧିକାଂଶ ଲୋକଙ୍କର ଅଧର୍ମରେ ହିଁ ରୁଚି ହେବ ॥ ୫ ॥ ତୁମେ ଏଥର ନିଜର ଆତ୍ମୀୟସ୍ୱଜନ ଓ ବନ୍ଧୁବାନ୍ଧବଙ୍କର ସ୍ନେହସମ୍ବନ୍ଧ ତୁଟାଇଦିଅ ଏବଂ ଅନନ୍ୟ ପ୍ରେମରେ ମୋଠାରେ ମନ ଲଗାଇ ଓ ସମଦୃଷ୍ଟି ରଖି ପୃଥିବୀରେ ସ୍ୱଚ୍ଛନ୍ଦରେ ବିଚରଣ କର ॥ ୬ ॥ ଏହି ଜଗତରେ ଯାହା କିଛି ମନରେ ବିଚାର କରାଯାଏ, ବାଣୀରେ କୁହାଯାଏ, ନେତ୍ରରେ ଦେଖାଯାଏ ଓ ଇନ୍ଦ୍ରିୟମାନଙ୍କ ଦ୍ୱାରା ଶ୍ରବଣ ଆଦି କରାଯାଏ, ସେସବୁ ନାଶବାନ୍ । ସେସବୁ ହେଉଛି ସ୍ୱପ୍ନ ପରି ମନର ବିଳାସମାତ୍ର; ତେଣୁ ସେସବୁକୁ ମାୟାମାତ୍ର ବୋଲି ଜାଣ ॥ ୭ ॥ ଚଞ୍ଚଳଚିତ୍ତ ଅସଂଯମୀ ପୁରୁଷମାନଙ୍କ ମନରେ ନାନାତ୍ୱର ଭାବନା ହୁଏ । ସେପରି ଭ୍ରମ ହେବାରୁ ହିଁ 'ଏହା ଗୁଣ ଓ

ତସ୍ମାଦ୍ ଯୁକ୍ତେନ୍ଦ୍ରିୟଗ୍ରାମୋ ଯୁକ୍ତଚିତ୍ତ ଇଦଂ ଜଗତ୍ ।
ଆତ୍ମନୀକ୍ଷସ୍ୱ ବିତତମାତ୍ମାନଂ ମୟ୍ୟଧୀଶ୍ୱରେ ॥ ୯

ଜ୍ଞାନବିଜ୍ଞାନସଂଯୁକ୍ତ ଆତ୍ମଭୂତଃ ଶରୀରିଣାମ୍ ।
ଆତ୍ମାନୁଭବତୁଷ୍ଟାତ୍ମା ନାନ୍ତରାୟୈର୍ବିହନ୍ୟସେ ॥ ୧୦

ଦୋଷବୁଦ୍ଧ୍ୟୋଭୟାତୀତୋ ନିଷେଧାନ୍ନ ନିବର୍ତ୍ତତେ ।
ଗୁଣବୁଦ୍ଧ୍ୟା ଚ ବିହିତଂ ନ କରୋତି ଯଥାର୍ଭକଃ ॥ ୧୧

ସର୍ବଭୂତସୁହୃଚ୍ଛାନ୍ତୋ ଜ୍ଞାନବିଜ୍ଞାନନିଶ୍ଚୟଃ ।
ପଶ୍ୟନ୍ ମଦାତ୍ମକଂ ବିଶ୍ୱଂ ନ ବିପଦ୍ୟେତ ବୈ ପୁନଃ ॥ ୧୨

*ଶ୍ରୀଶୁକ ଉବାଚ*

ଇତ୍ୟାଦିଷ୍ଟୋ ଭଗବତା ମହାଭାଗବତୋ ନୃପ ।
ଉଦ୍ଧବଃ ପ୍ରଣିପତ୍ୟାହ ତତ୍ତ୍ୱଜିଜ୍ଞାସୁରଚ୍ୟୁତମ୍ ॥ ୧୩

*ଉଦ୍ଧବ ଉବାଚ*

ଯୋଗେଶ ଯୋଗବିନ୍ୟାସ ଯୋଗାତ୍ମନ୍ ଯୋଗସମ୍ଭବ ।
ନିଃଶ୍ରେୟସାୟ ମେ ପ୍ରୋକ୍ତସ୍ତ୍ୟାଗଃ ସଂନ୍ୟାସଲକ୍ଷଣଃ ॥ ୧୪

ତ୍ୟାଗୋଽୟଂ ଦୁଷ୍କରୋ ଭୂମନ୍ କାମାନାଂ ବିଷୟାତ୍ମଭିଃ ।
ସୁତରାଂ ତ୍ୱୟି ସର୍ବାତ୍ମନ୍ନଭକ୍ତୈରିତି ମେ ମତିଃ ॥ ୧୫

ସୋଽହଂ ମମାହମିତି ମୂଢମତିର୍ବିଗାଢ-
ସ୍ତ୍ୱନ୍ମାୟୟା ବିରଚିତାତ୍ମନି ସାନୁବନ୍ଧେ ।

ତାହା ଦୋଷ' ବୋଲି ଭେଦଦୃଷ୍ଟି ଜାତ ହୁଏ । ପ୍ରକୃତରେ ସେହି ଦୃଷ୍ଟି ନିଜ କଳ୍ପନାରୁ ହିଁ ଜାତ ହୋଇଥାଏ । ଏପରି ଲୋକଙ୍କ ପାଇଁ କର୍ମ (ଶାସ୍ତ୍ରବିହିତ କର୍ମ) କ'ଣ, ଅକର୍ମ (ଶାସ୍ତ୍ରନିଷିଦ୍ଧ କର୍ମ) କ'ଣ ଓ ବିକର୍ମ (ବିହିତକର୍ମବର୍ଜନ) କ'ଣ, ସେହି ସମ୍ବନ୍ଧରେ ନିର୍ଦ୍ଦେଶ ରହିଛି ॥ ୮ ॥

ତେଣୁ ହେ ଉଦ୍ଧବ ! ତୁମେ ନିଜର ଇନ୍ଦ୍ରିୟମାନଙ୍କୁ ଓ ଚିତ୍ତକୁ ବଶ କରି ସମ୍ପୂର୍ଣ୍ଣ ବିଶ୍ୱକୁ ନିଜ ଆତ୍ମାରେ ଦେଖ ଏବଂ ଆତ୍ମାକୁ ସବୁରି ଅଧୀଶ୍ୱର ମୋ ଭିତରେ ଦେଖ ॥ ୯ ॥ 'ମୁଁ ସମସ୍ତଙ୍କର ଆତ୍ମା'—ଏପରି ଜାଣି ସମସ୍ତ ଦେହଧାରୀଙ୍କ ସହିତ ଆତ୍ମଭୂତ ହୋଇଯାଅ; ନିଜର ଆତ୍ମାନୁଭବରେ ଆନନ୍ଦମଗ୍ନ ହୋଇ ଜ୍ଞାନବିଜ୍ଞାନରେ ସମ୍ପନ୍ନ ହୋଇଯାଅ । ତା'ଫଳରେ କୌଣସି ପ୍ରକାର ବିଘ୍ନ ଆସିଲେ ମଧ୍ୟ ତୁମେ ବିଚଳିତ ହେବ ନାହିଁ ॥ ୧୦ ॥ ଗୁଣ ଓ ଦୋଷ ଉଭୟରୁ ସମ୍ପୂର୍ଣ୍ଣ ଅତୀତ ହୋଇଯାଅ । ଶିଶୁ ଯେପରି ବିହିତ କର୍ମ କଲେ ମଧ୍ୟ ଗୁଣବୁଦ୍ଧି ରଖି (ଭଲ ଭାବି) କରେ ନାହିଁ, କି ନିଷିଦ୍ଧ କର୍ମରୁ ଦୂରେଇ ରହିଲେ ଦୋଷବୁଦ୍ଧି ରଖି (ମନ୍ଦ ଭାବି) ଦୂରେଇ ରହେ ନାହିଁ, ଅର୍ଥାତ୍ ଶିଶୁର ଯେପରି ଗୁଣବୁଦ୍ଧି ନ ଥାଏ କି ଦୋଷବୁଦ୍ଧି ନ ଥାଏ; ସେ କେବଳ ପରମହଂସଙ୍କ ପରି ନିର୍ବିକାରରେ କର୍ମ କରିଥାଏ, ତୁମେ ସେହିପରି ଗୁଣ ଓ ଦୋଷ ଉଭୟର ଉପରକୁ ଉଠିଯାଅ ॥ ୧୧ ॥ ଯୋଗୀ ସକଳ ପ୍ରାଣୀଙ୍କ ସହିତ ସୁହୃଦ୍‌ଭାବ ରଖିବା ଆବଶ୍ୟକ, ତାଙ୍କ ଚିତ୍ତରେ ସର୍ବଦା ଶାନ୍ତି ରହିବା ଆବଶ୍ୟକ ଏବଂ ସେ ସକଳ ବିଶ୍ୱକୁ ନିଜର ସ୍ୱରୂପ ବୋଲି ବୁଝିବା ଉଚିତ । ଏପରି କଲେ, ସେ ଆଉ ଜନ୍ମ ମୃତ୍ୟୁ ଚକ୍ରରେ ପଡ଼ିବେ ନାହିଁ ॥ ୧୨ ॥

**ଶ୍ରୀଶୁକଦେବ କହିଗଲିଲେ**—ଭଗବାନ ଶ୍ରୀକୃଷ୍ଣ ଏପରି ଆଦେଶ ଦେବାରୁ ଭଗବାନଙ୍କର ପରମ ପ୍ରେମୀ ଉଦ୍ଧବ ତାଙ୍କୁ ପ୍ରଣାମ କରି, ତତ୍ତ୍ୱଜ୍ଞାନ ପାଇବା ଇଚ୍ଛାରେ କହିଲେ ॥ ୧୩ ॥

**ଉଦ୍ଧବ କହିଲେ**—ପ୍ରଭୁ! ଆପଣ ହିଁ ଯୋଗର ସ୍ୱାମୀ; ଯୋଗ ଆପଣଙ୍କ ଠାରେ ହିଁ ପ୍ରତିଷ୍ଠିତ ହୋଇଛି । ଆପଣ ହେଉଛନ୍ତି ସାକ୍ଷାତ୍ ଯୋଗସ୍ୱରୂପ । ଆପଣ ହିଁ ଯୋଗର ଜନ୍ମସ୍ଥାନ । ତେଣୁ ମୋର ଉଦ୍ଧାର ନିମନ୍ତେ ଆପଣ ମୋତେ ସନ୍ନ୍ୟାସରୂପୀ ତ୍ୟାଗର ଲକ୍ଷଣ ଉପଦେଶ ଦେଲେ ॥ ୧୪ ॥ ମାତ୍ର ହେ ଅନନ୍ତ ! ବିଷୟୀ ଜୀବ ବହୁ କାମନାରେ ବାନ୍ଧି ହୋଇଯାଇଥାଏ; ତେଣୁ ତ୍ୟାଗର ତତ୍ତ୍ୱ ବୁଝିବା ତା'ପକ୍ଷରେ ବଡ଼ ଦୁଷ୍କର । ବିଶେଷ କରି, ଯେ ଆପଣଙ୍କ ଭକ୍ତି ପ୍ରତି ବିମୁଖ, ମୁଁ ଭାବୁଛି, ତା'ପାଇଁ ଏହା ଆହୁରି ଦୁଷ୍କର ॥ ୧୫ ॥ ହେ ପ୍ରଭୁ ! ମୁଁ ମଧ୍ୟ 'ମୁଁ-ମୋର' ରୂପୀ ଜାଲରେ ଛନ୍ଦି ହୋଇ ରହିଛି । ଆପଣଙ୍କ ମାୟା ହେତୁ ମୋ ବୁଦ୍ଧି ମୋର

ତତ୍ତ୍ୱଞ୍ଜସା ନିଗଦିତଂ ଭବତା ଯଥାହଂ
ସଂସାଧୟାମି ଭଗବନ୍ନନୁଶାଧି ଭୃତ୍ୟମ୍ ॥ ୧୬

ସତ୍ୟସ୍ୟ ତେ ସ୍ୱଦୃଶ ଆତ୍ମନ ଆତ୍ମନୋଽନ୍ୟଂ
ବକ୍ତାରମୀଶ ବିବୁଧେଷ୍ୱପି ନାନୁଚକ୍ଷେ ।
ସର୍ବେ ବିମୋହିତଧିୟସ୍ତବ ମାୟୟେମେ
ବ୍ରହ୍ମାଦୟସ୍ତନୁଭୃତୋ ବହିରର୍ଥଭାବାଃ ॥ ୧୭

ତସ୍ମାଦ୍ ଭବନ୍ତମନବଦ୍ୟମନନ୍ତପାରଂ
ସର୍ବଜ୍ଞମୀଶ୍ୱରମକୁଣ୍ଠବିକୁଣ୍ଠଧିଷ୍ଣ୍ୟମ୍ ।
ନିର୍ବିଣ୍ଣଧୀରହମୁ ହ ବୃଜିନାଭିତପ୍ତୋ
ନାରାୟଣଂ ନରସଖଂ ଶରଣଂ ପ୍ରପଦ୍ୟେ ॥ ୧୮

*ଶ୍ରୀଭଗବାନୁବାଚ*

ପ୍ରାୟେଣ ମନୁଜା ଲୋକେ ଲୋକତତ୍ତ୍ୱବିଚକ୍ଷଣାଃ ।
ସମୁଦ୍ଧରନ୍ତି ହ୍ୟାତ୍ମାନମାତ୍ମନୈବାଶୁଭାଶୟାତ୍ ॥ ୧୯

ଆତ୍ମନୋ ଗୁରୁରାତ୍ମୈବ ପୁରୁଷସ୍ୟ ବିଶେଷତଃ ।
ଯତ୍ ପ୍ରତ୍ୟକ୍ଷାନୁମାନାଭ୍ୟାଂ ଶ୍ରେୟୋଽସାବନୁବିନ୍ଦତେ ॥ ୨୦

ପୁରୁଷତ୍ୱେ ଚ ମାଂ ଧୀରାଃ ସାଂଖ୍ୟଯୋଗବିଶାରଦାଃ ।
ଆବିସ୍ତରାଂ ପ୍ରପଶ୍ୟନ୍ତି ସର୍ବଶକ୍ତ୍ୟୁପବୃଂହିତମ୍ ॥ ୨୧

ଏକଦ୍ୱିତ୍ରିଚତୁଷ୍ପାଦୋ ବହୁପାଦସ୍ତଥାପଦଃ ।
ବହ୍ୱ୍ୟଃ ସନ୍ତି ପୁରଃ ସୃଷ୍ଟାସ୍ତାସାଂ ମେ ପୌରୁଷୀ ପ୍ରିୟା ॥ ୨୨

ଅତ୍ର ମାଂ ମାର୍ଗୟନ୍ତ୍ୟଦ୍ଧା ଯୁକ୍ତା ହେତୁଭିରୀଶ୍ୱରମ୍ ।
ଗୃହ୍ୟମାଣୈର୍ଗୁଣୈର୍ଲିଙ୍ଗୈରଗ୍ରାହ୍ୟମନୁମାନତଃ ॥ ୨୩

ଅତ୍ରାପ୍ୟୁଦାହରନ୍ତୀମମିତିହାସଂ ପୁରାତନମ୍ ।
ଅବଧୂତସ୍ୟ ସଂବାଦଂ ଯଦୋରମିତତେଜସଃ ॥ ୨୪

ପରିବାର ଓ ସ୍ୱଜନଙ୍କ ପ୍ରତି ଏପରି ଅହଂତ୍ୱ-ମମତ୍ୱର ନିବିଡ଼ ବନ୍ଧନରେ ବାନ୍ଧି ହୋଇଯାଇଛି ଯେ, ମୂଢ଼ତାବଶତଃ ମୁଁ ତାହାକୁ ଛିଡ଼ାଇ ପାରୁନାହିଁ। ଆପଣ ଏବେ ଯେଉଁ ସନ୍ନ୍ୟାସ ବା ତ୍ୟାଗଧର୍ମ ପ୍ରତିପାଦନ କଲେ, ମୁଁ ଏହା ଯେପରି ସହଜରେ ପାଳନ କରିପାରିବି, ସେହି ଦୃଷ୍ଟିରୁ ଆପଣଙ୍କର ଏହି ସେବକକୁ ତାହା ସରଳଭାବରେ ବୁଝାଇଦିଅନ୍ତୁ ॥ ୧୬ ॥ ହେ ଈଶ୍ୱର ! ଆପଣ ହିଁ ସତ୍ୟସ୍ୱରୂପ ଏବଂ ଆପଣ ହିଁ ସମସ୍ତଙ୍କର ନେତ୍ରସ୍ୱରୂପ ଅର୍ଥାତ୍ ପ୍ରକାଶକ। ଆପଣ ହିଁ ସମସ୍ତଙ୍କର ଆତ୍ମା। ଏପରି ଶକ୍ତିସମ୍ପନ୍ନ ଆପଣ ଥାଉ ଥାଉ ଆତ୍ମତତ୍ତ୍ୱ ନିର୍ଣ୍ଣୟ କରିପାରିବା ଭଳି ବ୍ୟକ୍ତି ଆପଣଙ୍କ ବ୍ୟତୀତ ମୁଁ ଅନ୍ୟ କାହାକୁ ଦେଖିପାରୁ ନାହିଁ; କାରଣ ବ୍ରହ୍ମାଙ୍କ ଠାରୁ ଆରମ୍ଭ କରି ଯେତେସବୁ ଦେବତା ଅଛନ୍ତି, ସମସ୍ତେ ଆପଣଙ୍କ ମାୟାରେ ବିମୋହିତ। ସମସ୍ତଙ୍କର ଦୃଷ୍ଟି ବହିର୍ଗାମୀ। ତେଣୁ ହେ ପ୍ରଭୁ! ମୁଁ ଆପଣଙ୍କର ଶରଣ ନେଇଛି। ଆପଣ ହେଉଛନ୍ତି ନରଙ୍କର ସଖା ନାରାୟଣ। ଆପଣ ଅନନ୍ତ, ଅପାର, ସର୍ବଜ୍ଞ, ସର୍ବନିୟନ୍ତା ଏବଂ ନିରଞ୍ଜନ; ଅବିନାଶୀ ବୈକୁଣ୍ଠ ମଧ୍ୟ ଆପଣଙ୍କର ହିଁ ଧାମ। ମୁଁ ସଂସାର-ଦୁଃଖରେ ସନ୍ତପ୍ତ ହେଉଛି। (ଆପଣ ମୋତେ ଶ୍ରେୟମାର୍ଗ ଉପଦେଶ ଦେଇ ଉଦ୍ଧାର କରନ୍ତୁ।) ॥ ୧୭,୧୮ ॥

**ଶ୍ରୀଭଗବାନ କହିଲେ**—ପ୍ରିୟ ଉଦ୍ଧବ ! ଇହଲୋକରେ ଯେଉଁମାନେ ସଂସାରର ବାସ୍ତବିକ ସ୍ୱରୂପକୁ ଜାଣିବାରେ ବୁଦ୍ଧିମାନ ହୋଇଥାନ୍ତି, ସେମାନେ ପ୍ରାୟତଃ ମନର ଅଶୁଭ ବାସନାମାନଙ୍କରୁ ନିଜକୁ ମୁକ୍ତ ରଖିଥାନ୍ତି ॥ ୧୯ ॥ ବିଶେଷ କରି ମନୁଷ୍ୟ ହେଉଛି ନିଜେ ନିଜର ଗୁରୁ। ପ୍ରତ୍ୟକ୍ଷ ପ୍ରମାଣଦ୍ୱାରା ଏବଂ ଅନୁମାନ ପ୍ରମାଣଦ୍ୱାରା ନିଜର ହିତ ଓ ଅହିତ ବିଷୟରେ ଜ୍ଞାନ ଲାଭ କରି ସେ ସ୍ୱୟଂ ନିଜକୁ ଉଦ୍ଧାର କରିବାକୁ ସମର୍ଥ ॥ ୨୦ ॥ ଯେଉଁମାନେ ସାଂଖ୍ୟଶାସ୍ତ୍ର ଓ ଯୋଗଶାସ୍ତ୍ରରେ ପ୍ରବୀଣ, ସେହି ଜ୍ଞାନୀମାନେ ଏହି ମାନବଜୀବନରେ ହିଁ ସର୍ବଶକ୍ତିସମ୍ପନ୍ନ ମୋତେ ଅର୍ଥାତ୍ ପରମାତ୍ମାଙ୍କୁ ପ୍ରତ୍ୟକ୍ଷ ରୂପରେ ତଥା ସର୍ବବ୍ୟାପକ ବିରାଟ ସଗୁଣ-ନିରାକାର ରୂପରେ ମଧ୍ୟ ମୋର ସାକ୍ଷାତ୍କାର ଲାଭ କରିଥାନ୍ତି ॥ ୨୧ ॥

ମୁଁ ଏକପଦ, ଦ୍ୱିପଦ, ତ୍ରିପଦ, ଚତୁଷ୍ପଦ ଏବଂ ବହୁପଦ ତଥା ବିନାପଦ—ଏପରି ବହୁବିଧ ପ୍ରାଣୀ ସୃଷ୍ଟି କରିଛି; କିନ୍ତୁ ମନୁଷ୍ୟଶରୀର ହିଁ ମୋର ସର୍ବାଧିକ ପ୍ରିୟ ॥ ୨୨ ॥ ମୁଁ ଅଗୋଚର ସତ, କିନ୍ତୁ ଏହି ମନୁଷ୍ୟଦେହରେ ହିଁ ମୋତେ ମୋର ଗୁଣ, ଲକ୍ଷଣ ଇତ୍ୟାଦି ଆଧାରରେ ଏବଂ ଅନୁମାନ-ଦ୍ୱାରା ଅନ୍ୱେଷଣ କରି ଉପଲବ୍ଧି କରିହୁଏ ॥ ୨୩ ॥ ଏହି ପ୍ରସଙ୍ଗରେ (ତତ୍ତ୍ୱଜ୍ଞାନ ଲାଭ କରି ବା ଭଗବାନଙ୍କୁ ଉପଲବ୍ଧି କରି ଆନନ୍ଦରେ ବିଚରଣ କରିବା ସମ୍ବନ୍ଧରେ)

ଅବଧୂତଂ ଦ୍ୱିଜଂ କଞ୍ଚିଚ୍ଚରନ୍ତମକୁତୋଭୟମ୍ ।
କବିଂ ନିରୀକ୍ଷ୍ୟ ତରୁଣଂ ଯଦୁଃ ପପ୍ରଚ୍ଛ ଧର୍ମବିତ୍ ॥ ୨୫

*ଯଦୁରୁବାଚ*

କୁତୋ ବୁଦ୍ଧିରିୟଂ ବ୍ରହ୍ମନ୍ନକର୍ତ୍ତୁଃ ସୁବିଶାରଦା ।
ଯାମାସାଦ୍ୟ ଭବାଁଲ୍ଲୋକଂ ବିଦ୍ୱାଂଶ୍ଚରତି ବାଳବତ୍ ॥ ୨୬

ପ୍ରାୟୋ ଧର୍ମାର୍ଥକାମେଷୁ ବିବିତ୍ସାୟାଂ ଚ ମାନବାଃ ।
ହେତୁନୈବ ସମୀହନ୍ତେ ଆୟୁଷୋ ଯଶସଃ ଶ୍ରିୟଃ ॥ ୨୭

ତ୍ୱଂ ତୁ କଳ୍ପଃ କବିର୍ଦକ୍ଷଃ ସୁଭଗୋଽମୃତଭାଷଣଃ ।
ନ କର୍ତ୍ତା ନେହସେ କିଞ୍ଚିଜ୍ଜଡ଼ୋନ୍ମତ୍ତପିଶାଚବତ୍ ॥ ୨୮

ଜନେଷୁ ଦହ୍ୟମାନେଷୁ କାମଲୋଭଦବାଗ୍ନିନା ।
ନ ତପ୍ୟସେଽଗ୍ନିନା ମୁକ୍ତୋ ଗଙ୍ଗାମ୍ଭଃସ୍ଥ ଇବ ଦ୍ୱିପଃ ॥ ୨୯

ତ୍ୱଂ ହି ନଃ ପୃଚ୍ଛତାଂ ବ୍ରହ୍ମନ୍ନାତ୍ମନ୍ୟାନନ୍ଦକାରଣମ୍ ।
ବ୍ରୂହି ସ୍ପର୍ଶବିହୀନସ୍ୟ ଭବତଃ କେବଳାତ୍ମନଃ ॥ ୩୦

*ଶ୍ରୀଭଗବାନୁବାଚ*

ଯଦୁନୈବଂ ମହାଭାଗୋ ବ୍ରହ୍ମଣ୍ୟେନ ସୁମେଧସା ।
ପୃଷ୍ଟଃ ସଭାଜିତଃ ପ୍ରାହ ପ୍ରଶ୍ରୟାବନତଂ ଦ୍ୱିଜଃ ॥ ୩୧

*ବ୍ରାହ୍ମଣ ଉବାଚ*

ସନ୍ତି ମେ ଗୁରବୋ ରାଜନ୍ ବହବୋ ବୁଦ୍ଧ୍ୟୁପାଶ୍ରିତାଃ ।
ଯତୋ ବୁଦ୍ଧିମୁପାଦାୟ ମୁକ୍ତୋଽଟାମୀହ ତାଞ୍ଛୃଣୁ ॥ ୩୨

ମହାତ୍ମାମାନେ ଗୋଟିଏ ପ୍ରାଚୀନ ଇତିହାସ (ଚରିତ) କହିଥାନ୍ତି । ତାହା ପରମ ତେଜସ୍ୱୀ ଅବଧୂତ ଦତ୍ତାତ୍ରେୟ* ଓ ରାଜା ଯଦୁଙ୍କ ସଂବାଦରୂପେ ପରିଚିତ ॥ ୨୪ ॥ ଥରେ ଧର୍ମର ମର୍ମଜ୍ଞ ରାଜା ଯଦୁ ଦେଖିଲେ ଯେ, ଜଣେ ତ୍ରିକାଳଦର୍ଶୀ ତରୁଣ ଅବଧୂତ ବ୍ରାହ୍ମଣ ନିର୍ଭୟ ହୋଇ ବୁଲୁଛନ୍ତି । ତେଣୁ ସେ ତାଙ୍କୁ ପଚାରିଲେ—॥ ୨୫ ॥

**ରାଜା ଯଦୁ ପଚାରିଲେ**—ହେ ବ୍ରାହ୍ମଣ ! ଆପଣ ତ କୌଣସି କର୍ମ କରୁନାହାନ୍ତି; ତଥାପି ଆପଣଙ୍କୁ ଏହି ନିପୁଣ ବୁଦ୍ଧି କେଉଁଠୁ ମିଳିଲା, ଯେଉଁ ବୁଦ୍ଧିର ଆଶ୍ରୟ ନେଇ ଆପଣ ପରମ ବିଦ୍ୱାନ୍ ହୋଇ ମଧ୍ୟ ଅବୋଧ ବାଳକ ପରି ସଂସାରରେ ବିଚରଣ କରୁଛନ୍ତି ? ॥ ୨୬ ॥ ପ୍ରାୟତଃ ଦେଖାଯାଏ ଯେ, ମନୁଷ୍ୟ କିଛି ନା କିଛି କାମନା ରଖି ହିଁ ଧର୍ମ, ଅର୍ଥ, କାମ ଏବଂ ତତ୍ତ୍ୱଜ୍ଞାନ ପ୍ରାପ୍ତି ନିମନ୍ତେ ପ୍ରବୃତ୍ତ ହୋଇଥାଏ, ଯାହାବଳରେ କି ତାକୁ ଆୟୁ, ଯଶକୀର୍ତ୍ତି ଅଥବା ଧନସମ୍ପଦ ମିଳେ । କିନ୍ତୁ ମୁଁ ଦେଖୁଛି ଆପଣ ସମର୍ଥ; ତା'ସହିତ ଜ୍ଞାନୀ ଏବଂ ଦକ୍ଷ; ଶରୀର ବି ସୁନ୍ଦର; ଆପଣ ଅମୃତ ପରି ମଧୁର ବାର୍ତ୍ତାଳାପ ବି କରୁଛନ୍ତି; ଅଥଚ କିଛି କର୍ମ କରୁନାହାନ୍ତି, କି କିଛି ଗ୍ରହୁଁନାହାନ୍ତି । ଆପଣ ପୂରାପୂରି ଜଡ଼-ଉନ୍ମତ୍ତ ଅବଧୂତ ପରି ନିଜେ ନିଜ ଆନନ୍ଦରେ ବୁଡ଼ି ରହିଛନ୍ତି ॥୨୭,୨୮॥ ଯେଉଁ କାମ, କ୍ରୋଧ ଓ ଲୋଭରୂପୀ ଦାବାନଳରୁ ରକ୍ଷା ପାଇବାର କୌଣସି ଉପାୟ ନାହିଁ, ଅନ୍ୟ ଲୋକେ ତ ସେହି ଦାବାନଳରେ ଜଳୁଛନ୍ତି; ଅଥଚ ଆପଣ ସେଥିରୁ ସମ୍ପୂର୍ଣ୍ଣ ମୁକ୍ତ । ଗଙ୍ଗାଜଳରେ ଠିଆ ହୋଇଥିବା ହାତୀକୁ ଯେପରି ଦାବାନଳର ତାପ ଲାଗେ ନାହିଁ, ବରଂ ସେ ଶୀତଳତା ଅନୁଭବ କରେ, ଆପଣଙ୍କ ଉପରେ ସେହିପରି ସଂସାର-ତାପର କୌଣସି ପ୍ରଭାବ ପଡୁନାହିଁ ॥ ୨୯ ॥ ହେ ବ୍ରହ୍ମନ୍ ! ଆପଣଙ୍କର ଏହି ସଂସାରରେ କାହାରି ପ୍ରତି ଟିକିଏ ବି ଆସକ୍ତି ନାହିଁ । ଆପଣ ନିଜର ଶୁଦ୍ଧସ୍ୱରୂପରେ ପ୍ରତିଷ୍ଠିତ ରହିଛନ୍ତି । ଆପଣଙ୍କର ଏହି ଅନିର୍ବଚନୀୟ ଆନନ୍ଦର କାରଣ କ'ଣ, ମୋତେ ଟିକିଏ କୃପା କରି କହନ୍ତୁ ॥ ୩୦ ॥

**ଭଗବାନ ଶ୍ରୀକୃଷ୍ଣ କହିଗ୍ଲିଲେ**—ବ୍ରାହ୍ମଣମାନଙ୍କୁ ଆଦର କରୁଥିବା ପରମ ବୁଦ୍ଧିମାନ୍ ମହାରାଜା ଯଦୁ ଅତ୍ୟନ୍ତ ବିନମ୍ରତାରେ ନତମସ୍ତକ ହୋଇ ମହାଭାଗ୍ୟଶାଳୀ ବ୍ରାହ୍ମଣଶ୍ରେଷ୍ଠ ଅବଧୂତ ଦତ୍ତାତ୍ରେୟଙ୍କୁ ଏପରି ପ୍ରାର୍ଥନା କରିବାରୁ, ଦତ୍ତାତ୍ରେୟ ଉତ୍ତର ଦେଲେ—॥ ୩୧ ॥

**ବ୍ରହ୍ମବେତ୍ତା ଶ୍ରୀଦତ୍ତାତ୍ରେୟ କହିଲେ**—ହେ ରାଜନ୍ ! ମୁଁ ମୋ ବୁଦ୍ଧିବଳରେ ବହୁ ଗୁରୁଙ୍କର ଆଶ୍ରୟ ନେଇଛି ।

* ଦତ୍ତାତ୍ରେୟ ଥିଲେ ସ୍ୱୟଂ ଭଗବାନଙ୍କ ଅବତାର । ସେ ଲୋକଙ୍କୁ ଉପଦେଶ ଦେବା ନିମନ୍ତେ ହିଁ ଚବିଶ ଗୁରୁଙ୍କ ନାମ କହିଛନ୍ତି । ଉଦାହରଣଦ୍ୱାରା ଉପଦେଶ ଦେଲେ, ତାହା ସମସ୍ତେ ବୁଝିପାରନ୍ତି । ତେଣୁ ଏଥିରୁ ସାରକଥା ଗ୍ରହଣ କରିବା ଆବଶ୍ୟକ ।

ପୃଥିବୀ ବାୟୁରାକାଶମାପୋଽଗ୍ନିଶ୍ଚନ୍ଦ୍ରମା ରବିଃ ।
କପୋତୋଽଜଗରଃ ସିନ୍ଧୁଃ ପତଙ୍ଗୋ ମଧୁକୃଦ୍ ଗଜଃ ॥ ୩୩

ମଧୁହା ହରିଣୋ ମୀନଃ ପିଙ୍ଗଳା କୁରରୋଽର୍ଭକଃ ।
କୁମାରୀ ଶରକୃତ୍ ସର୍ପ ଊର୍ଣ୍ଣନାଭିଃ ସୁପେଶକୃତ୍ ॥ ୩୪

ଏତେ ମେ ଗୁରବୋ ରାଜଂଶ୍ଚତୁର୍ବିଂଶତିରାଶ୍ରିତାଃ ।
ଶିକ୍ଷା ବୃତ୍ତିଭିରେତେଷାମନ୍ୱଶିକ୍ଷମିହାତ୍ମନଃ ॥ ୩୫

ଯତୋ ଯଦନୁଶିକ୍ଷାମି ଯଥା ବା ନାହୁଷାତ୍ମଜ ।
ତତ୍ତଥା ପୁରୁଷବ୍ୟାଘ୍ର ନିବୋଧ କଥୟାମି ତେ ॥ ୩୬

ଭୂତୈରାକ୍ରମ୍ୟମାଣୋଽପି ଧୀରୋ ଦୈବବଶାନୁଗୈଃ ।
ତଦ୍ ବିଦ୍ୱାନ୍ନ ଚଲେନ୍ମାର୍ଗାଦନ୍ୱଶିକ୍ଷଂ କ୍ଷିତେର୍ବ୍ରତମ୍ ॥ ୩୭

ଶଶ୍ୱତ୍ପରାର୍ଥସର୍ବେହଃ ପରାର୍ଥୈକାନ୍ତସମ୍ଭବଃ ।
ସାଧୁଃ ଶିକ୍ଷେତ ଭୂଭୃତ୍ତୋ ନଗଶିଷ୍ୟଃ ପରାତ୍ମତାମ୍ ॥ ୩୮

ପ୍ରାଣବୃତ୍ତ୍ୟୈବ ସନ୍ତୁଷ୍ୟେନ୍ମୁନିର୍ନୈବେନ୍ଦ୍ରିୟପ୍ରିୟୈଃ ।
ଜ୍ଞାନଂ ଯଥା ନ ନଶ୍ୟେତ ନାବକୀର୍ୟେତ ବାଙ୍ମନଃ ॥ ୩୯

ବିଷୟେଷ୍ୱାବିଶନ୍ ଯୋଗୀ ନାନାଧର୍ମେଷୁ ସର୍ବତଃ ।
ଗୁଣଦୋଷବ୍ୟପେତାତ୍ମା ନ ବିଷଜ୍ଜେତ ବାୟୁବତ୍ ॥ ୪୦

ସେମାନଙ୍କ ଠାରୁ ଶିକ୍ଷା ଗ୍ରହଣ କରି ମୁଁ ଏହି ଜଗତରେ ମୁକ୍ତଭାବରେ ସ୍ୱଚ୍ଛନ୍ଦରେ ବିଚରଣ କରୁଛି । ଆପଣ ସେହି ଗୁରୁମାନଙ୍କର ନାମ ଓ ସେମାନଙ୍କ ଠାରୁ ମୁଁ ଗ୍ରହଣ କରିଥିବା ଶିକ୍ଷା ବିଷୟରେ ଶୁଣନ୍ତୁ ॥ ୩୨ ॥

ମୋର ଗୁରୁମାନଙ୍କର ନାମ ହେଲା—ପୃଥିବୀ, ବାୟୁ, ଆକାଶ, ଜଳ, ଅଗ୍ନି, ଚନ୍ଦ୍ର, ସୂର୍ଯ୍ୟ, କପୋତ, ଅଜଗର, ସମୁଦ୍ର, ପତଙ୍ଗ, ଭ୍ରମର ବା ମହୁମାଛି, ହାତୀ, ମହୁସଂଗ୍ରହକାରୀ, ହରିଣ, ମାଛ, ପିଙ୍ଗଳା ବେଶ୍ୟା, କୁରର ପକ୍ଷୀ, ବାଳକ, କୁମାରୀ କନ୍ୟା, ଶରନିର୍ମାତା, ସର୍ପ, ବୁଢିଆଣୀ ଓ ଭୃଙ୍ଗୀ କୀଟ (କୁମ୍ଭାରପୋକ) ॥ ୩୩,୩୪ ॥

ହେ ରାଜନ୍ ! ଏହି ଚବିଶ ଗୁରୁଙ୍କ ଆଶ୍ରୟ ନେଇ ସେମାନଙ୍କ ଠାରୁ ମୁଁ ଯେଉଁସବୁ ଆଚରଣ ଶିକ୍ଷା କରିଛି, ତାହା କହୁଛି, ଶୁଣ । ହେ ବୀରବର ଯଯାତିନନ୍ଦନ ! ଆପଣଙ୍କ ଆଗରେ ମୁଁ ସେସବୁ ପୃଥକ୍ ପୃଥକ୍ ବର୍ଣ୍ଣନା କରୁଛି ॥ ୩୫,୩୬ ॥

ମୁଁ ପୃଥିବୀଠାରୁ ଏହି କ୍ଷମା ଗୁଣଟି ଶିକ୍ଷା କଲି ଯେ, ଅନ୍ୟମାନେ ଯେତେ ପୀଡ଼ା ଦେଲେ ବି ଜ୍ଞାନୀ ନିଜ ସ୍ୱରୂପସ୍ଥିତିରେ ଅଟଳ ବା ଶାନ୍ତ ହୋଇ ରହି, ତାହା ପ୍ରାରବ୍ଧ ହେତୁ ମିଳିଛି ବୋଲି ଭାବି କଦାପି ବିଚଳିତ ନ ହେବା ଉଚିତ । ପୃଥିବୀର ସକଳ କ୍ରିୟା ପରୋପକାର ନିମନ୍ତେ ହିଁ ଉଦ୍ଦିଷ୍ଟ ହୋଇଥାଏ । ତା'ଛଡ଼ା ପୃଥିବୀର ଅଂଶଭୂତ ପାହାଡ଼ ଓ ବୃକ୍ଷଙ୍କ ଠାରୁ ମୁଁ ଏହି ଶିକ୍ଷା ଗ୍ରହଣ କଲି ଯେ ମନୁଷ୍ୟର ସମସ୍ତ କର୍ମ ଓ ଜନ୍ମ ପରୋପକାର ନିମନ୍ତେ ହିଁ ଅଭିପ୍ରେତ ହେବା ଉଚିତ ।

**ଧନ୍ୟ ଜୀବନ ଏ ଜଗତେ । ଯେ ପ୍ରାଣ ଧରେ ପରହିତେ ॥**
**ଧନ୍ୟ ଜୀବନ ଧନ୍ୟ ତାର । ଦୁର୍ଲଭ କର୍ମ ଏ ବେଭାର ॥**
॥ ୩୭,୩୮ ॥

ମୁଁ ବାୟୁ(ଶରୀର ଅଭ୍ୟନ୍ତର ପ୍ରାଣବାୟୁ)ଠାରୁ ଶିଖିଲି ଯେ, ମୁନିଙ୍କୁ ପ୍ରାଣବୃତ୍ତିରେ ହିଁ ସନ୍ତୁଷ୍ଟ ରହିବାକୁ ପଡ଼ିବ, ଅର୍ଥାତ୍ ଇନ୍ଦ୍ରିୟତୃପ୍ତି ନିମନ୍ତେ ଖାଦ୍ୟ ଗ୍ରହଣ ନ କରି, କେବଳ ପ୍ରାଣ ଧାରଣ କରିବାକୁ ଯେତିକି ଆବଶ୍ୟକ, ସେତିକି ହିଁ ଆହାର କରିବାକୁ ପଡ଼ିବ । ଏପରିଭାବରେ ଆହାରରେ ସଂଯମ ରଖିଲେ, ବାଣୀ ବୃଥା ବାକ୍ୟାଳାପ କରିବ ନାହିଁ, ମନ ଏଣେତେଣେ ଭ୍ରମିତ ହେବ ନାହିଁ ଏବଂ ଜ୍ଞାନ ମଧ୍ୟ ନଷ୍ଟ ହେବ ନାହିଁ ॥ ୩୯ ॥

ଏହାଛଡ଼ା ବାହ୍ୟ ବାୟୁ ଯେପରି ସର୍ବତ୍ର ବିଚରଣ କରେ, କିନ୍ତୁ କୌଣସି ବିଷୟରେ ଲିପ୍ତ ହୁଏ ନାହିଁ ଏବଂ ସେ

ପାର୍ଥିବେଷ୍ୱିହ ଦେହେଷୁ ପ୍ରବିଷ୍ଟସ୍ତଦ୍‌ଗୁଣାଶ୍ରୟଃ ।
ଗୁଣୈର୍ନ ଯୁଜ୍ୟତେ ଯୋଗୀ ଗନ୍ଧୈର୍ବାୟୁରିବାତ୍ମଦୃକ୍ ॥ ୪୧

ଅନ୍ତର୍ହିତଶ୍ଚ ସ୍ଥିରଜଙ୍ଗମେଷୁ
ବ୍ରହ୍ମାତ୍ମଭାବେନ ସମନ୍ୱୟେନ ।
ବ୍ୟାପ୍ତ୍ୟାବ୍ୟବଚ୍ଛେଦମସଙ୍ଗମାତ୍ମନୋ
ମୁନିର୍ନଭସ୍ତ୍ୱଂ ବିତତସ୍ୟ ଭାବୟେତ୍ ॥ ୪୨

ତେଜୋଽବନ୍ନମୟୈର୍ଭାବୈର୍ମେଘାଦ୍ୟୈର୍ବାୟୁନେରିତୈଃ ।
ନ ସ୍ପୃଶ୍ୟତେ ନଭସ୍ତଦ୍‌ବତ୍ କାଳସୃଷ୍ଟୈର୍ଗୁଣୈଃ ପୁମାନ୍ ॥ ୪୩

ସ୍ୱଚ୍ଛଃ ପ୍ରକୃତିତଃ ସ୍ନିଗ୍ଧୋ ମାଧୁର୍ଯ୍ୟସ୍ତୀର୍ଥଭୂର୍ନୃଣାମ୍ ।
ମୁନିଃ ପୁନାତ୍ୟପାଂ ମିତ୍ରମୀକ୍ଷୋପସ୍ପର୍ଶକୀର୍ତ୍ତନୈଃ ॥ ୪୪

ତେଜସ୍ୱୀ ତପସା ଦୀପ୍ତୋ ଦୁର୍ଦ୍ଧର୍ଷୋଦରଭାଜନଃ ।
ସର୍ବଭକ୍ଷୋଽପି ଯୁକ୍ତାତ୍ମା ନାଦତ୍ତେ ମଳମଗ୍ନିବତ୍ ॥ ୪୫

ଯେପରି ଗନ୍ଧ ଗ୍ରହଣ କରି ମଧ୍ୟ ତାହା ନ ରଖି ଛାଡ଼ିଦେଇଥାଏ, ଯୋଗୀ ସେହିପରି ସର୍ବତ୍ର ବିଚରଣ କରି ମଧ୍ୟ ବିଭିନ୍ନ ବିଷୟର ଗୁଣଦୋଷ ଗ୍ରହଣ କରିବାନ୍ତୁ ସର୍ବଥା ବିରତ ରହିବା ତଥା ସେସବୁରେ ଆସକ୍ତ ନ ହେବା ଉଚିତ ॥ ୪୦ ॥ ବାୟୁ ଯେପରି ଗନ୍ଧ ବହନ କରେ, କିନ୍ତୁ ଗନ୍ଧର ଗୁଣଦୋଷରୁ ଅସଙ୍ଗ ରହେ; ଠିକ୍ ସେହିପରି ସର୍ବତ୍ର ପରିପୂର୍ଣ୍ଣ ହୋଇ ରହିଥିବା ଆତ୍ମା ପାର୍ଥିବ ଶରୀରରେ ରହି ମଧ୍ୟ ଶରୀରଧର୍ମରୁ ନିର୍ଲିପ୍ତ ରହେ। ଜ୍ଞାନୀ ଠିକ୍ ସେହିପରି ଶରୀର ଧରି ମଧ୍ୟ ଶରୀରର ଗୁଣଦୋଷରେ ଜଡ଼ିତ ହେବା ଅନୁଚିତ ॥ ୪୧ ॥

ଆକାଶ ଯେପରି ସର୍ବତ୍ର ବ୍ୟାପ୍ତ ଓ ସର୍ବବ୍ୟାପକ, ବ୍ରହ୍ମ ସେହିପରି ଆତ୍ମାରୂପେ ସ୍ଥାବର, ଜଙ୍ଗମ ଆଦି ସକଳ ପ୍ରାଣୀଙ୍କ ମଧ୍ୟରେ ସମରୂପରେ ସର୍ବବ୍ୟାପକ; ଅର୍ଥାତ୍ ବ୍ରହ୍ମ ଆତ୍ମାରୂପେ ବାହାରେ ଓ ଭିତରେ ସର୍ବତ୍ର ପରିପୂର୍ଣ୍ଣ ହୋଇଛି। ଆକାଶର ଦୃଷ୍ଟାନ୍ତରୁ ମୁନି ଅଖଣ୍ଡ ଅସଙ୍ଗ ବ୍ରହ୍ମର ଅର୍ଥାତ୍ ଆତ୍ମାର ସର୍ବବ୍ୟାପକତା ଅନୁଭବ କରିବା ଆବଶ୍ୟକ ॥ ୪୨ ॥ ବାୟୁଦ୍ୱାରା ପ୍ରେରିତ ମେଘସମୂହ ଆକାଶରେ ହିଁ ରହନ୍ତି; କିନ୍ତୁ ଆକାଶ ସେମାନଙ୍କ ଠାରୁ ନିର୍ଲିପ୍ତ ହୋଇ ରହେ। ସେହିପରି କାଳପ୍ରେରଣାରେ ସତ୍ତ୍ୱ ଆଦି ତ୍ରିଗୁଣର କାର୍ଯ୍ୟରୂପୀ ଅଗ୍ନି, ଜଳ ଓ ପୃଥିବୀକୁ ନେଇ ନିର୍ମିତ ହୋଇଥିବା ଶରୀର ଓ ଇନ୍ଦ୍ରିୟାଦି ସହିତ ପୁରୁଷର ମଧ୍ୟ କୌଣସି ସମ୍ବନ୍ଧ ନାହିଁ ॥ ୪୩ ॥

(ଜଳର ଦୃଷ୍ଟାନ୍ତ ଦେଇ ସେ କହିଲେ) ଜଳ ଯେପରି ସ୍ୱଭାବତଃ ସ୍ୱଚ୍ଛ, ପ୍ରିୟ ଓ ତୀର୍ଥରୂପ ହୋଇଥିବାରୁ ମନୁଷ୍ୟକୁ ପବିତ୍ର କରେ, ଠିକ୍ ସେହିପରି ମୁନିଙ୍କ ସ୍ୱଭାବ ମଧ୍ୟ ଶୁଦ୍ଧ ହେବା ଉଚିତ; ସେ ମଧୁରଭାଷୀ ଓ ଲୋକପାବନକାରୀ ହେବା ଉଚିତ ॥ ୪୪ ॥

(ତା'ପରେ ଅଗ୍ନିର ଦୃଷ୍ଟାନ୍ତ ଦେଇ କହିଲେ,) ଅଗ୍ନି ତେଜସ୍ୱୀ ଓ ଜ୍ୟୋତିର୍ମୟ ହୋଇଥାଏ, ତାହାକୁ ଅନ୍ୟ କେହି ନିଜ ତେଜରେ ପରାଭୂତ କରିପାରେ ନାହିଁ, ତା ପାଖରେ ସଂଗ୍ରହ-ପରିଗ୍ରହ କରିବା ନିମନ୍ତେ ସ୍ୱତନ୍ତ୍ରରୂପେ କୌଣସି ପାତ୍ର ନ ଥାଏ (ଅର୍ଥାତ୍ ସବୁ କିଛି ସେ ଉପସ୍ଥିତ କ୍ଷେତ୍ରରେ ହିଁ ନିଜ ମଧ୍ୟରେ ସମାବିଷ୍ଟ କରିନିଏ), ଏବଂ ସବୁ କିଛିକୁ ଜଳାଇ ମଧ୍ୟ କୌଣସି ବସ୍ତୁର ଦୋଷରେ ଲିପ୍ତ ହୁଏ ନାହିଁ। ସାଧକ ଠିକ୍ ସେହିପରି ପରମ ତେଜସ୍ୱୀ, ତପବଳରେ ଦେଦୀପ୍ୟମାନ ଓ ଇନ୍ଦ୍ରିୟଙ୍କ ଦ୍ୱାରା ଅପରାଭୂତ ହେବା ଉଚିତ। ସେ କୌଣସି ଦ୍ରବ୍ୟ ସଂଗ୍ରହ କରି ନ ରଖି ଉଦରମାତ୍ର ପୂର୍ଣ୍ଣ କରିବା ଉଚିତ। ଯଥାଯୋଗ୍ୟ ଆବଶ୍ୟକୀୟ ବିଷୟ ସେବନ କରି ମଧ୍ୟ ସେ ତାହାର

କ୍ୱଚିଚ୍ଛନ୍ନଃ କ୍ୱଚିତ୍ ସ୍ପଷ୍ଟ ଉପାସ୍ୟଃ ଶ୍ରେୟ ଇଚ୍ଛତାମ୍ ।
ଭୁଙ୍କ୍ତେ ସର୍ବତ୍ର ଦାତୃଣାଂ ଦହନ୍ ପ୍ରାଗୁତ୍ତରାଶୁଭମ୍ ॥ ୪୬

ସ୍ୱମାୟୟା ସୃଷ୍ଟମିଦଂ ସଦସଲ୍ଲକ୍ଷଣଂ ବିଭୁଃ ।
ପ୍ରବିଷ୍ଟ ଈୟତେ ତତ୍ତତ୍ସ୍ୱରୂପୋଽଗ୍ନିରିବୈଧସି ॥ ୪୭

ବିସର୍ଗାଦ୍ୟାଃ ଶ୍ମଶାନାନ୍ତା ଭାବା ଦେହସ୍ୟ ନାତ୍ମନଃ ।
କଳାନାମିବ ଚନ୍ଦ୍ରସ୍ୟ କାଳେନାବ୍ୟକ୍ତବର୍ତ୍ମନା ॥ ୪୮

କାଳେନ ହ୍ୟୋଘବେଗେନ ଭୂତାନାଂ ପ୍ରଭବାପ୍ୟୟୌ ।
ନିତ୍ୟାବପି ନ ଦୃଶ୍ୟେତେ ଆତ୍ମନୋଽଗ୍ନେର୍ଯଥାର୍ଚ୍ଚିଷାମ୍ ॥ ୪୯

ଗୁଣୈର୍ଗୁଣାନୁପାଦତ୍ତେ ଯଥାକାଳଂ ବିମୁଞ୍ଚତି ।
ନ ତେଷୁ ଯୁଜ୍ୟତେ ଯୋଗୀ ଗୋଭିର୍ଗା ଇବ ଗୋପତିଃ ॥ ୫୦

ବୁଧ୍ୟତେ ସ୍ୱେନ ଭେଦେନ ବ୍ୟକ୍ତିସ୍ଥ ଇବ ତଦ୍ଗତଃ ।
ଲକ୍ଷ୍ୟତେ ସ୍ଥୂଳମତିଭିରାତ୍ମା ଚାବସ୍ଥିତୋଽର୍କବତ୍ ॥ ୫୧

ଦୋଷରେ ପ୍ରଭାବିତ ହେବା ଉଚିତ ନୁହେଁ ॥ ୪୫ ॥ ଅଗ୍ନି କେଉଁଠି ପ୍ରକଟିତ ହୋଇଥାଏ ତ, କେଉଁଠି ଅପ୍ରକଟ ହୋଇ ରହିଥାଏ । କଲ୍ୟାଣକାମୀ ପୁରୁଷମାନେ ଅଗ୍ନିର ଉପାସନା ମଧ୍ୟ କରନ୍ତି । ଠିକ୍ ସେହିପରି ସାଧୁପୁରୁଷ କେଉଁଠି ନିଜକୁ ଲୁଗ୍ଇ ରଖିଥାନ୍ତି ତ, କେଉଁଠି ନିଜକୁ ପ୍ରକଟ କରିଦିଅନ୍ତି । ସେ ହେଉଛନ୍ତି ଅଗ୍ନିଙ୍କ ପରି ସର୍ବଭକ୍ଷୀ । ସେହି ମହାପୁରୁଷ ତାଙ୍କୁ ଅନ୍ନାଦି ଦେଉଥିବା ବ୍ୟକ୍ତିଙ୍କର ପୂର୍ବକାଳର ଓ ଉତ୍ତରକାଳର ଅର୍ଥାତ୍ ଭୂତ ଓ ଭବିଷ୍ୟ ଉଭୟ କାଳର ସକଳ ଅମଙ୍ଗଳ ଜାଳିଦିଅନ୍ତି ଓ ତାଙ୍କୁ ପବିତ୍ର କରିଦିଅନ୍ତି । (ଏପରି ଅମଳିନ ସାଧୁ ମହାତ୍ମାମାନେ ଅନ୍ୟ ଲୋକଙ୍କୁ ପବିତ୍ର କରିଦେବା ନିମନ୍ତେ ହିଁ ତାଙ୍କଠାରୁ ଭିକ୍ଷା ଗ୍ରହଣ କରନ୍ତି ।) ॥ ୪୬ ॥ ଅଗ୍ନିର କୌଣସି ଏକ ନିର୍ଦ୍ଦିଷ୍ଟ ଆକାର ନ ଥାଏ । ତାହାର ଯେଉଁ ଆକାରର କାଠ ସହ ସଂଯୋଗ ଘଟେ, ତାହା ସେହି ଆକାର ପରି ଦୃଷ୍ଟିଗୋଚର ହୁଏ । ଠିକ୍ ସେହିପରି ମାୟାରେ ନିର୍ମିତ ସତ୍-ଅସତ୍ (ବ୍ୟକ୍ତ ଓ ଅବ୍ୟକ୍ତ) ସମସ୍ତ ସ୍ଥାବର ଓ ଜଙ୍ଗମ ପ୍ରାଣୀଙ୍କ ଠାରେ ପ୍ରବିଷ୍ଟ ହୋଇ ଏକମାତ୍ର ଆତ୍ମା ହିଁ ସେମାନଙ୍କର ବିବିଧ ଆକୃତି ଅନୁସାରେ ଭିନ୍ନ ଭିନ୍ନ ପ୍ରତୀୟମାନ ହୋଇଥାଏ ॥ ୪୭ ॥

(ତା'ପରେ ଚନ୍ଦ୍ରର ଦୃଷ୍ଟାନ୍ତ ଦେଇ କହିଲେ,) କାଳର ଗତିପ୍ରଭାବରେ ଚନ୍ଦ୍ରକଳାର ଯେପରି କ୍ଷୟ-ବୃଦ୍ଧି ଘଟେ, ଅଲକ୍ଷିତଗତି କାଳପ୍ରଭାବରେ ଦେହର ଅବସ୍ଥା ସେହିପରି ଉତ୍ପତ୍ତିଠାରୁ ଆରମ୍ଭ କରି ମୃତ୍ୟୁ ପର୍ଯ୍ୟନ୍ତ ବଦଳି ଚାଲିଥାଏ; କିନ୍ତୁ ଏହି ପରିବର୍ତ୍ତନର ଆତ୍ମା ସହିତ କୌଣସି ସମ୍ବନ୍ଧ ନ ଥାଏ । ଅଗ୍ନିଶିଖା ଯେପରି ଅଗ୍ନିରୁ ବାହାରି ନଷ୍ଟ ହେବାରେ ଲାଗିଥାଏ, ଅର୍ଥାତ୍ କିପରି ବାହାରେ ଓ କିପରି ନଷ୍ଟ ହୁଏ, ଦେଖାଯାଏ ନାହିଁ; କାଳର ପ୍ରଚଣ୍ଡ ବେଗରେ ପ୍ରାଣୀମାନଙ୍କର ଠିକ୍ ସେହିପରି ଉତ୍ପତ୍ତି ଓ ମୃତ୍ୟୁ ହୋଇଚାଲେ, କିନ୍ତୁ ତାହା ଦେଖାଯାଏ ନାହିଁ ॥ ୪୮,୪୯ ॥

(ତା'ପରେ ସୂର୍ଯ୍ୟଙ୍କ ଦୃଷ୍ଟାନ୍ତ ଦେଇ କହିଲେ,) ସୂର୍ଯ୍ୟ ଯେପରି ନିଜ କିରଣଦ୍ୱାରା ଯଥାସମୟରେ ଜଳ ଗ୍ରହଣ କରନ୍ତି ଓ ତାହା ପୁଣି ବର୍ଷା କରିଦିଅନ୍ତି, କିନ୍ତୁ ସେଥିରେ ଆସକ୍ତ ହୁଅନ୍ତି ନାହିଁ, ଠିକ୍ ସେହିପରି ଯୋଗୀ ଗ୍ରହଣ କରିବେ ଓ ଦାନ କରିବେ ସିନା, ସେଥିରେ ଆସକ୍ତ ହେବା ଉଚିତ ନୁହେଁ ॥ ୫୦ ॥ ସୂର୍ଯ୍ୟ ଏକ ହୋଇଥିଲେ ମଧ୍ୟ ନାନା ଜଳପାତ୍ରରେ ଯେପରି ଲୋକଙ୍କୁ ଭିନ୍ନ ଭିନ୍ନ (ଅନେକ) ଦେଖାଯାଆନ୍ତି, ଠିକ୍ ସେହିପରି ଆତ୍ମା ଏକ ହୋଇଥିଲେ ମଧ୍ୟ ଦେହକୁ ହିଁ ଆତ୍ମା ବୋଲି ଭାବୁଥିବା

ନାତିସ୍ନେହଃ ପ୍ରସଙ୍ଗୋ ବା କର୍ତ୍ତବ୍ୟଃ କ୍ୱାପି କେନଚିତ୍ ।
କୁର୍ବନ୍ ବିନ୍ଦେତ ସନ୍ତାପଂ କପୋତ ଇବ ଦୀନଧୀଃ ॥ ୫୨

କପୋତଃ କଶ୍ଚନାରଣ୍ୟେ କୃତନୀଡ଼ୋ ବନସ୍ପତୌ ।
କପୋତ୍ୟା ଭାର୍ଯ୍ୟୟା ସାର୍ଦ୍ଧମୁବାସ କତିଚିତ୍ ସମାଃ ॥ ୫୩

କପୋତୌ ସ୍ନେହଗୁଣିତହୃଦୟୌ ଗୃହଧର୍ମିଣୌ ।
ଦୃଷ୍ଟିଂ ଦୃଷ୍ଟ୍ୟାଙ୍ଗମଙ୍ଗେନ ବୁଦ୍ଧିଂ ବୁଦ୍ଧ୍ୟା ବବନ୍ଧତୁଃ ॥ ୫୪

ଶଯ୍ୟାସନାଟନସ୍ଥାନବାର୍ତ୍ତାକ୍ରୀଡ଼ାଶନାଦିକମ୍ ।
ମିଥୁନୀଭୂୟ ବିସ୍ରବ୍ଧୌ ଚେରତୁର୍ବନରାଜିଷୁ ॥ ୫୫

ଯଂ ଯଂ ବାଞ୍ଛତି ସା ରାଜଂସ୍ତର୍ପୟନ୍ତ୍ୟନୁକମ୍ପିତା ।
ତଂ ତଂ ସମନୟତ୍ କାମଂ କୃଚ୍ଛ୍ରେଣାପ୍ୟଜିତେନ୍ଦ୍ରିୟଃ ॥ ୫୬

କପୋତୀ ପ୍ରଥମଂ ଗର୍ଭଂ ଗୃହ୍ଣତୀ କାଳ ଆଗତେ ।
ଅଣ୍ଡାନି ସୁଷୁବେ ନୀଡ଼େ ସ୍ୱପତ୍ୟୁଃ ସନ୍ନିଧୌ ସତୀ ॥ ୫୭

ତେଷୁ କାଳେ ବ୍ୟଜାୟନ୍ତ ରଚିତାବୟବା ହରେଃ ।
ଶକ୍ତିଭିର୍ଦ୍ଦୁର୍ବିଭାବ୍ୟାଭିଃ କୋମଳାଙ୍ଗତନୂରୁହାଃ ॥ ୫୮

ପ୍ରଜାଃ ପୁପୁଷତୁଃ ପ୍ରୀତୌ ଦମ୍ପତୀ ପୁତ୍ରବତ୍ସଲୌ ।
ଶୃଣ୍ୱନ୍ତୌ କୂଜିତଂ ତାସାଂ ନିର୍ବୃତୌ କଳଭାଷିତୈଃ ॥ ୫୯

ତାସାଂ ପତତ୍ରୈଃ ସୁସ୍ପର୍ଶୈଃ କୂଜିତୈର୍ମୁଗ୍ଧଚେଷ୍ଟିତୈଃ ।
ପ୍ରତ୍ୟୁଦ୍‌ଗମୈରଦୀନାନାଂ ପିତରୌ ମୁଦମାପତୁଃ ॥ ୬୦

ସ୍ନେହାନୁବଦ୍ଧହୃଦୟାବନ୍ୟୋନ୍ୟଂ ବିଷ୍ଣୁମାୟୟା ।
ବିମୋହିତୌ ଦୀନଧିୟୌ ଶିଶୂନ୍ ପୁପୁଷତୁଃ ପ୍ରଜାଃ ॥ ୬୧

ସ୍ଥୂଳବୁଦ୍ଧି ଲୋକଙ୍କୁ ତାହା ଶରୀରର ରୂପ-ଆକାର ଭେଦରେ ଭିନ୍ନ ଭିନ୍ନ ଦେଖାଯାଏ; ଆତ୍ମା ଯେ ଏକ, ଏକଥା ସେମାନେ ବୁଝିପାରନ୍ତି ନାହିଁ। ସୂର୍ଯ୍ୟଙ୍କ ଦୃଷ୍ଟାନ୍ତରୁ ଆତ୍ମାର ଅଖଣ୍ଡତା ଓ ଅଭିନ୍ନତା ବୁଝିବା ଉଚିତ ॥ ୫୧ ॥

(ତା'ପରେ କପୋତର ଉଦାହରଣ ଦେଇ କହିଲେ,)

**ଅଧିକ ସଂସାର ସଙ୍ଗତେ । ପୀରତି ନ କରିବ ଚିତ୍ତେ ॥**
**ଯେବେ କରିବ ସ୍ନେହ ଆଶ । କପୋତ ପ୍ରାୟେ ଯିବ ନାଶ ॥**
॥ ୫୨ ॥

ହେ ରାଜନ୍ ! ବଣରେ କପୋତ ପକ୍ଷୀଟିଏ ଗୋଟିଏ ଗଛରେ ବସା ବାନ୍ଧି ତାର ପ୍ରିୟା କପୋତୀ ସହିତ ରହୁଥିଲା । ସେହି ଦୁଇ ପ୍ରାଣୀଙ୍କର ପରସ୍ପର ପ୍ରତି ସ୍ନେହ ନିରନ୍ତର ବଢ଼ି ଚାଲିଥିଲା। ସେମାନେ ଗୃହସ୍ଥ ଧର୍ମରେ ଏତେ ଆସକ୍ତ ହୋଇଯାଇଥିଲେ ଯେ, ସବୁବେଳେ ଆଖିରେ ଆଖି, ଦେହରେ ଦେହ ଓ ବୁଦ୍ଧିରେ ବୁଦ୍ଧି ଯୋଡ଼ି ରଖିଥିଲେ। ସେମାନେ ପରସ୍ପରକୁ ଏତେ ବିଶ୍ୱାସ କରୁଥିଲେ ଯେ, ଗଛଲତାର ଡାଳରେ ନିର୍ଭୟରେ ଏକତ୍ର ଶୁଆବସା, ଚଲାବୁଲା, କଥାଭାଷା ଓ ଖିଆପିଆ କରୁଥିଲେ ॥ ୫୩-୫୫ ॥

ହେ ରାଜନ୍ ! କପୋତୀକୁ କପୋତ ଏତେ ପ୍ରେମ କରୁଥିଲା ଯେ, କପୋତୀ ଯେତେବେଳେ ଯାହା ଚାହୁଁଥିଲା, କପୋତ ସକଳ ପ୍ରକାର କଷ୍ଟ ସହି ତାର ସେହି କାମନା ପୂର୍ଣ୍ଣ କରୁଥିଲା। କପୋତୀ ମଧ୍ୟ ପ୍ରେମାଳାପ ଆଦିଦ୍ୱାରା କପୋତକୁ ଖୁସୀ କରୁଥିଲା। କାଳକ୍ରମେ କପୋତୀଟିର ପ୍ରଥମ ଗର୍ଭ ରହିଲା। ସେ ତାର ସ୍ୱାମୀ ପାଖରେ ହିଁ ରହି ବସାରେ ଅଣ୍ଡା ଦେଲା ॥ ୫୬,୫୭ ॥ ଭଗବାନଙ୍କର ଅଚିନ୍ତ୍ୟ ଶକ୍ତିରୁ ଯଥାସମୟରେ ଅଣ୍ଡା ଫୁଟିଲା ଓ ସେଥିରୁ ଅଣ୍ଟ, ପାଦ ଆଦି ଥିବା ଛୁଆ ବାହାରିଆସିଲେ। ସେମାନଙ୍କର ପ୍ରତ୍ୟେକ ଅଙ୍ଗ ଓ ପର ଅତି କୋମଳ ହୋଇଥାଏ ॥ ୫୮ ॥ ଏଥର କପୋତ-କପୋତୀଙ୍କ ଆଖି ଛୁଆଙ୍କ ଉପରେ ଲାଖିରହିଲା। ସେମାନେ ଅତି ସ୍ନେହରେ ଓ ଆନନ୍ଦରେ ଛୁଆଙ୍କୁ ଲାଳନପାଳନ କଲେ ଏବଂ ଛୁଆଙ୍କର ମିଠା ମିଠା କଥା ଓ କୁଁ କୁଁ ଶବ୍ଦ ଶୁଣି ଆନନ୍ଦମଗ୍ନ ହୋଇଗଲେ। ଏହିପରି ଆନନ୍ଦରେ ବୁଡ଼ିରହିବା ସହିତ ଛୁଆଙ୍କ କୋମଳ ପର ସ୍ପର୍ଶ କରି ଏବଂ ସେମାନଙ୍କର କଳରବ ଓ ଉଡ଼ିବା ଚେଷ୍ଟା ଦେଖି ଦେଖି କପୋତ-କପୋତୀ ଖୁବ୍ ଖୁସୀ ହେଲେ। ଛୁଆମାନେ ଯେତେବେଳେ ଫୁକୁରୁ ଫୁକୁରୁ ହୋଇ ମାଆ-ବାପାଙ୍କ ପାଖକୁ ଧାଇଁ ଆସୁଥାନ୍ତି, ସେତେବେଳେ ଏହି ଦୁଇପ୍ରାଣୀ ଆନନ୍ଦମଗ୍ନ ହୋଇଯାଉଥାନ୍ତି ॥ ୫୯,୬୦ ॥

ହେ ରାଜନ୍ ! ଏପରିଭାବରେ ସେହି କପୋତ-କପୋତୀ ଭଗବାନଙ୍କ ମାୟାରେ ମୋହିତ ହୋଇ ରହିଥାନ୍ତି।

ଏକଦା ଜଗ୍ମତୁସ୍ତାସାମନ୍ନାର୍ଥଂ ତୌ କୁଟୁମ୍ବିନୌ ।
ପରିତଃ କାନନେ ତସ୍ମିନର୍ଥିନୌ ଚେରତୁଶ୍ଚିରମ୍ ॥ ୬୨

ଦୃଷ୍ଟ୍ୱା ତାଁଲ୍ଲୁବ୍ଧକଃ କଶ୍ଚିଦ୍ ଯଦୃଚ୍ଛାତୋ ବନେଚରଃ ।
ଜଗୃହେ ଜାଲମାତତ୍ୟ ଚରତଃ ସ୍ୱାଲୟାନ୍ତିକେ ॥ ୬୩

କପୋତଶ୍ଚ କପୋତୀ ଚ ପ୍ରଜାପୋଷେ ସଦୋତ୍ସୁକୌ ।
ଗତୌ ପୋଷଣମାଦାୟ ସ୍ୱନୀଡ଼ମୁପଜଗ୍ମତୁଃ ॥ ୬୪

କପୋତୀ ସ୍ୱାତ୍ମଜାନ୍ ବୀକ୍ଷ୍ୟ ବାଲକାଞ୍ଜାଲସଂବୃତାନ୍ ।
ତାନଭ୍ୟଧାବତ୍ କ୍ରୋଶନ୍ତୀ କ୍ରୋଶତୋ ଭୃଶଦୁଃଖିତା ॥ ୬୫

ସାସକୃତ୍ସ୍ନେହଗୁଣିତା ଦୀନଚିତ୍ତାଜମାୟୟା ।
ସ୍ୱୟଂ ଚାବଧ୍ୟତ ଶିଚା ବଦ୍ଧାନ୍ ପଶ୍ୟନ୍ତ୍ୟପସ୍ମୃତିଃ ॥ ୬୬

କପୋତଶ୍ଚାତ୍ମଜାନ୍ ବଦ୍ଧାନାତ୍ମନୋଽପ୍ୟଧିକାନ୍ ପ୍ରିୟାନ୍ ।
ଭାର୍ଯ୍ୟାଂ ଚାତ୍ମସମାଂ ଦୀନୋ ବିଲଲାପାତିଦୁଃଖିତଃ ॥ ୬୭

ଅହୋ ମେ ପଶ୍ୟତାପାୟମଳ୍ପପୁଣ୍ୟସ୍ୟ ଦୁର୍ମତେଃ ।
ଅତୃପ୍ତସ୍ୟାକୃତାର୍ଥସ୍ୟ ଗୃହସ୍ତ୍ରୈବର୍ଗିକୋ ହତଃ ॥ ୬୮

ଅନୁରୂପାନୁକୂଳା ଚ ଯସ୍ୟ ମେ ପତିଦେବତା ।
ଶୂନ୍ୟେ ଗୃହେ ମାଂ ସନ୍ତ୍ୟଜ୍ୟ ପୁତ୍ରୈଃ ସ୍ୱର୍ଯାତି ସାଧୁଭିଃ ॥ ୬୯

ସେମାନଙ୍କର ହୃଦୟ ଏକ ଆରେକର ସ୍ନେହବନ୍ଧନରେ ବାନ୍ଧି ହୋଇଯାଇଥାଏ । ବିଚରା କପୋତଦମ୍ପତି ନିଜର ଛୋଟ ଛୋଟ ଛୁଆଙ୍କ ଲାଳନ-ପାଳନରେ ଏତେ ବ୍ୟସ୍ତ ରହିଥିଲେ ଯେ, ସେମାନଙ୍କର ବାହାର ଦୁନିଆ କଥା ବା ଲୋକ-ପରଲୋକ କଥା ଆଦୌ ମନେ ପଡୁ ନ ଥିଲା ॥ ୬୧ ॥ ଦିନେ ସେହି ଦୁଇପ୍ରାଣୀ ଛୁଆଙ୍କ ନିମନ୍ତେ ଖାଦ୍ୟ ଆଣିବାକୁ ଦୂର ବନକୁ ଚାଲିଯାଇଥାନ୍ତି; କାରଣ କୁଟୁମ୍ବ ବଢ଼ି ଯାଇଥାଏ । ସେମାନେ ଖାଦ୍ୟ ସଂଗ୍ରହ କରିବାକୁ ବହୁ ସମୟ ଧରି ବନରେ ବୁଲିଲେ ॥ ୬୨ ॥ ଜଣେ ଚଢ଼େଇଧରା କେଳା ବଣରେ ବୁଲୁ ବୁଲୁ ଦୈବଯୋଗକୁ ସେମାନଙ୍କ ବସା ଥିବା ଗଛପାଖରେ ପହଞ୍ଚିଗଲା । ସେ ଦେଖିଲା, ବସାର ଆଖପାଖରେ ଚଢ଼େଇଛୁଆମାନେ ଖେଳୁଛନ୍ତି । ତେଣୁ ସେ ଜାଲ ବିଛାଇ ସେମାନଙ୍କୁ ଧରିନେଲା ॥ ୬୩ ॥

କପୋତ-କପୋତୀ ତ ଛୁଆଙ୍କୁ ଖୋଇବା-ପେଇବାରେ ସବୁବେଳେ ଉତ୍ସୁକ ଥିଲେ । ତେଣୁ ସେମାନେ ଆହାର ଧରି ବସା ପାଖକୁ ଉଡ଼ି ଆସିଲେ । କପୋତୀ ଆସି ଦେଖେ ତ, ତାର ପ୍ରାଣଧନ କୁନି କୁନି ଛୁଆଗୁଡ଼ିକ କେଳାର ଜାଲରେ ପଡ଼ିଯାଇଛନ୍ତି । ଛୁଆଙ୍କୁ ଏପରି ଅବସ୍ଥାରେ ଦେଖି ତାର ଦୁଃଖର ସୀମା ରହିଲା ନାହିଁ । ସେ କାନ୍ଦିବୋବେଇ ସେମାନଙ୍କ ପାଖକୁ ଧାଇଁଗଲା । ଭଗବାନଙ୍କ ମାୟାରେ ତାର ଚିତ୍ତ ଅତ୍ୟନ୍ତ ଶୋକାକୁଳ ହୋଇଗଲା; ସ୍ମୃତି ହଜିଗଲା । ସ୍ନେହର ବନ୍ଧନରେ ବାନ୍ଧି ହୋଇ, ସେ ନିଜେ ଯାଇ ଛୁଆମାନେ ପଡ଼ିଥିବା ଜାଲଭିତରେ ପଶିଗଲା ॥ ୬୪-୬୬ ॥ ଯେତେବେଳେ କପୋତ ଦେଖିଲା ଯେ, ତାର ପ୍ରାଣଠାରୁ ବି ଅଧିକ ପ୍ରିୟ ଛୁଆମାନେ ଜାଲରେ ପଡ଼ିଯାଇଛନ୍ତି ଏବଂ ତାର ପ୍ରାଣପ୍ରିୟା ଭାର୍ଯ୍ୟା ମଧ୍ୟ ଯାଇ ସେହି ଜାଲରେ ପଡ଼ିଗଲା, ସେତେବେଳେ ସେ ଅତ୍ୟନ୍ତ ଦୁଃଖିତ ହୋଇ ବିଳାପ କରିବାକୁ ଲାଗିଲା । ସେତେବେଳେ ତା' ଅବସ୍ଥା ଅତ୍ୟନ୍ତ ଦୟନୀୟ ହୋଇଗଲା ॥ ୬୭ ॥ ସେ ଭାବିଲା, "ହାୟ ! ମୁଁ ବଡ଼ ଅଭାଗା, ବଡ଼ ଦୁର୍ମତି । ମୋର ତ ସର୍ବନାଶ ହୋଇଗଲା । ମୋତେ ଟିକିଏ ତୃପ୍ତି ମିଳିଲା ନାହିଁ, କି ମୋର ଆଶା ପୂର୍ଣ୍ଣ ହେଲା ନାହିଁ । ମୋର ଧର୍ମ, ଅର୍ଥ ଓ କାମର ମୂଳ ଏହି ଗୃହସ୍ଥାଶ୍ରମ ଆଜି ନଷ୍ଟଭ୍ରଷ୍ଟ ହୋଇଗଲା ॥ ୬୮ ॥ ହାୟ ! ମୋର ପ୍ରାଣପ୍ରିୟା ତ ମୋତେ ହିଁ ତାର ଇଷ୍ଟଦେବ ବୋଲି ଭାବୁଥିଲା । ସେ ମୋର ପ୍ରତ୍ୟେକ କଥା ମାନି ଚଳୁଥିଲା ।

ସୋଽହଂ ଶୂନ୍ୟେ ଗୃହେ ଦୀନୋ ମୃତଦାରୋ ମୃତପ୍ରଜଃ ।
ଜିଜୀବିଷେ କିମର୍ଥଂ ବା ବିଧୁରୋ ଦୁଃଖଜୀବିତଃ ॥ ୭୦

ମୋର ଇଚ୍ଛା ଅନୁସାରେ ସବୁକିଛି କରୁଥିଲା । ସବୁଦୃଷ୍ଟିରୁ ସେ ମୋର ଯୋଗ୍ୟା ଥିଲା । ଆଜି ସେ ମୋତେ ଏ ନିଛାଟିଆ ଘରଟାରେ ଏକାକୀ ଛାଡ଼ିଦେଇ ମୋର ସରଳ ନିର୍ମାୟା ଛୁଆଙ୍କ ସହିତ ସ୍ୱର୍ଗକୁ ଚ୍ଚଳିଗଲା । ମୋର ପିଲାଛୁଆ ମଲେ । ମୋ ସ୍ତ୍ରୀର ବି ପ୍ରାଣ ଗଲା । ମୋର ଏ ସଂସାରରେ ଆଉ କି ଦରକାର ! ମୋ ଭଳି ଅଭାଗାଟାର ଏହି ବିପତ୍ନୀକ ଜୀବନ ସତରେ ଦୁଃଖମୟ । ମୁଁ ଏହି ଶୂନ୍ୟଘରଟାକୁ ଆଉ କାହିଁକି ଯିବି?'' ॥ ୬୯,୭୦ ॥

ତାଂସ୍ତଥୈବାବୃତାଞ୍ଛିଗ୍‌ଭିର୍ମୃତ୍ୟୁଗ୍ରସ୍ତାନ୍ ବିଚେଷ୍ଟତଃ ।
ସ୍ୱୟଂ ଚ କୃପଣଃ ଶିକ୍ଷୁ ପଶ୍ୟନ୍ନପ୍ୟବୁଧୋଽପତତ୍ ॥ ୭୧

ହେ ରାଜନ୍ ! କପୋତଟିର ଛୁଆମାନେ ଜାଲରେ ପଡ଼ି ଯେପରି ଛଟପଟ ହେଉଥିଲେ, ସେଥିରୁ ସ୍ପଷ୍ଟ ହୋଇଯାଉଥିଲା ଯେ, ସେମାନେ ମୃତ୍ୟୁକବଳରେ ପଡ଼ିଯାଇଛନ୍ତି । କିନ୍ତୁ ତାହା ଦେଖି ମଧ୍ୟ, ସେହି ମୂର୍ଖ କପୋତ ଏତେ ବ୍ୟାକୁଳ ହୋଇଯାଇଥିଲା ଯେ, ସେ ଜାଣିଶୁଣି ଯାଇ ସେହି ଜାଲରେ ପଡ଼ିଗଲା ॥ ୭୧ ॥ ହେ ରାଜନ୍ ! କେଳା ଥିଲା ବଡ଼ ନିଷ୍ଠୁର । ସେହି ଗୃହସ୍ଥାଶ୍ରମୀ କପୋତ-କପୋତୀ ଓ ସେମାନଙ୍କର ଛୁଆଗୁଡ଼ିକ ମିଳିଯିବାରୁ ସେ ବହୁତ ଖୁସୀ ହେଲା । ମନୋରଥ ପୂରିଯିବାରୁ ସେ ସେମାନଙ୍କୁ ଧରି ତା ଘରକୁ ଫେରିଗଲା ॥ ୭୨ ॥

ତଂ ଲବ୍‌ଧ୍ୱା ଲୁବ୍ଧକଃ କ୍ରୂରଃ କପୋତଂ ଗୃହମେଧିନମ୍ ।
କପୋତକାନ୍ କପୋତୀଂ ଚ ସିଦ୍ଧାର୍ଥଃ ପ୍ରୟଯୌ ଗୃହମ୍ ॥ ୭୨

(କପୋତ ଠାରୁ ମୁଁ ଏହି ଶିକ୍ଷା ନେଲି ଯେ,) ଯେଉଁ ଗୃହସ୍ଥ ବ୍ୟକ୍ତି ବିଷୟମାନଙ୍କରେ ହିଁ ସୁଖ ଖୋଜେ ଏବଂ ଯାହାର ଚିତ୍ତ ଚଞ୍ଚଳ, ସେ ନିଜର ପାରିବାରିକ ଭରଣପୋଷଣରେ ଲାଗିରହି ଉକ୍ତ କପୋତଦମ୍ପତି ପରି ଦୟନୀୟ ଅବସ୍ଥାରେ ପଡ଼ିଯାଏ ଏବଂ ସମଗ୍ର ପରିବାର ସହିତ ତାର ଅଧଃପତନ ହୋଇଯାଏ ॥ ୭୩ ॥ ଏହି ଯେଉଁ ମନୁଷ୍ୟଶରୀର ମିଳିଛି, ଏହା ହେଉଛି ମୁକ୍ତିର ଖୋଲାଦ୍ୱାର । ଏପରି ମହାନ୍ ଜୀବନ ପାଇ ମଧ୍ୟ ଯେଉଁମାନେ ଆତ୍ମାର କଲ୍ୟାଣ ନିମନ୍ତେ ପ୍ରଯତ୍ନ କରନ୍ତି ନାହିଁ ଏବଂ ଉକ୍ତ କପୋତ-କପୋତୀ ପରି ଗୃହ ଜଞ୍ଜାଳରେ ଆସକ୍ତ ହୋଇ ରହନ୍ତି, ସେମାନଙ୍କୁ ମୁକ୍ତିମାର୍ଗର ସିଡ଼ିରେ ଚଢ଼ି ମଧ୍ୟ ତଳକୁ ଖସି ପଡ଼ିଥିବା ଅଭାଗା ବୋଲି ବୁଝିବାକୁ ହେବ । ଶାସ୍ତ୍ରର ଭାଷାରେ ସେମାନେ ହେଉଛନ୍ତି 'ଆରୂଢ଼ଚ୍ୟୁତ' ॥ ୭୪ ॥

ଏବଂ କୁଟୁମ୍ବ୍ୟଶାନ୍ତାତ୍ମା ଦ୍ୱନ୍ଦ୍ୱାରାମଃ ପତତ୍ତ୍ରିବତ୍ ।
ପୁଷ୍ଣନ୍ କୁଟୁମ୍ବଂ କୃପଣଃ ସାନୁବନ୍ଧୋଽବସୀଦତି ॥ ୭୩

ଯଃ ପ୍ରାପ୍ୟ ମାନୁଷଂ ଲୋକଂ ମୁକ୍ତିଦ୍ୱାରମପାବୃତମ୍ ।
ଗୃହେଷୁ ଖଗବତ୍ ସକ୍ତସ୍ତମାରୂଢଚ୍ୟୁତଂ ବିଦୁଃ ॥ ୭୪

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାମେକାଦଶସ୍କନ୍ଧେ*
*ସପ୍ତମୋଽଧ୍ୟାୟଃ ॥ ୭ ॥*



# ଅଥାଷ୍ଟମୋଽଧ୍ୟାୟଃ

## ଅଜଗରଠାରୁ ପିଙ୍ଗଳା ବେଶ୍ୟା ପର୍ଯ୍ୟନ୍ତ ନଅ ଗୁରୁଙ୍କ କଥା

*ବ୍ରାହ୍ମଣ ଉବାଚ*

**ସୁଖମୈନ୍ଦ୍ରିୟକଂ ରାଜନ୍ ସ୍ୱର୍ଗେ ନରକ ଏବ ଚ ।**
**ଦେହିନାଂ ଯଦ୍ ଯଥା ଦୁଃଖଂ ତସ୍ମାନ୍ନେଚ୍ଛେତ ତଦ୍ ବୁଧଃ ॥ ୧**

**ଅବଧୂତ ଦତ୍ତାତ୍ରେୟ କହିଲେ**—ହେ ରାଜନ୍ ! ଦେହଧାରୀ ଜୀବ ସ୍ୱର୍ଗ ଓ ନରକ ଉଭୟରେ ଇନ୍ଦ୍ରିୟଜନିତ ସୁଖଦୁଃଖ ଅନୁଭବ କରିଥାଏ। ବିନା ଇଚ୍ଛା ବା ବିନା ପ୍ରଯତ୍ନରେ ଦୁଃଖ ଯେପରି ଆସେ, ସୁଖ ମଧ୍ୟ ସେହିପରି ଆସେ। ତେଣୁ ବୁଦ୍ଧିମାନ ଲୋକ ସୁଖ ପାଇବାର ଇଚ୍ଛା ରଖିବା ଉଚିତ ନୁହେଁ॥ ୧ ॥

**ଗ୍ରାସଂ ସୁମୃଷ୍ଟଂ ବିରସଂ ମହାନ୍ତଂ ସ୍ତୋକମେବ ବା ।**
**ଯଦୃଚ୍ଛୟୈବାପତିତଂ ଗ୍ରସେଦାଜଗରୋଽକ୍ରିୟଃ ॥ ୨**

**ଶୟୀତାହାନି ଭୂରୀଣି ନିରାହାରୋଽନୁପକ୍ରମଃ ।**
**ଯଦି ନୋପନମେଦ୍ ଗ୍ରାସୋ ମହାହିରିବ ଦିଷ୍ଟଭୁକ୍ ॥ ୩**

**ଓଜଃସହୋବଳଯୁତଂ ବିଭ୍ରଦ୍ ଦେହମକର୍ମକମ୍ ।**
**ଶୟାନୋ ବୀତନିଦ୍ରଶ୍ଚ ନେହେତେନ୍ଦ୍ରିୟବାନପି ॥ ୪**

(ତା'ପରେ ଅଜଗରର ଦୃଷ୍ଟାନ୍ତ ଦେଇ ସେ କହିଲେ,)

**ଆହାରେ ଭଲ-ମନ୍ଦ ନାହିଁ । ଯେ ସ୍ଥାନେ ଯେମନ୍ତ ମିଳଇ ॥**
**ସନ୍ତୋଷେ କରଇ ଆହାର । ଏଣେ ବିଗ୍ରହ ନାହିଁ ମୋର ॥**
**ଅଳପେ ବହୁତେ ସନ୍ତୋଷ । ନ ମିଳେ କରେ ଉପବାସ ॥**

ତେଣୁ କାହାରିକୁ କିଛି ନ ମାଗି ଯୋଗୀକୁ ଉତ୍କୃଷ୍ଟ, ନିକୃଷ୍ଟ, ଅଳ୍ପ, ବହୁତ ଯାହାକିଛି ଆହାର ମିଳିଯିବ, ସେତିକି ଖାଇ ଅଜଗର ପରି ଉଦାସୀନ ଭାବରେ ରହିବା ଉଚିତ। କିଛିଦିନ ପର୍ଯ୍ୟନ୍ତ ଖାଦ୍ୟ ନ ମିଳିଲେ ମଧ୍ୟ ସେ ଖାଦ୍ୟପାଇଁ ପ୍ରଯତ୍ନ କରିବା ଉଚିତ ନୁହେଁ। ସବୁ ପ୍ରାରବ୍ଧର ଫଳ ବୋଲି ଜାଣି, ସେ ଅଜଗର ପରି ନିଶ୍ଚେଷ୍ଟ ରହିବା ଉଚିତ। ଓଜ (ମନୋବଳ), ସହ (ଇନ୍ଦ୍ରିୟବଳ) ଓ ବଳ (ଶାରୀରିକ ବଳ)—ଏପରି ତିନି ପ୍ରକାର ବଳରେ ଯୁକ୍ତ ହୋଇ ମଧ୍ୟ ତଥା ଇନ୍ଦ୍ରିୟରେ କାର୍ଯ୍ୟ କରିବାର କ୍ଷମତା ଥାଇ ମଧ୍ୟ ସେ ଶୋଇରହିବା ପରି ନିଶ୍ଚେଷ୍ଟ ଅବସ୍ଥାରେ ପଡ଼ିରହିବା ଉଚିତ ॥ ୨-୪ ॥

**ମୁନିଃ ପ୍ରସନ୍ନଗମ୍ଭୀରୋ ଦୁର୍ବିଗାହ୍ୟୋ ଦୁରତ୍ୟୟଃ ।**
**ଅନନ୍ତପାରୋ ହ୍ୟକ୍ଷୋଭ୍ୟଃ ସ୍ତିମିତୋଦ ଇବାର୍ଣ୍ଣବଃ ॥ ୫**

(ସମୁଦ୍ରର ଦୃଷ୍ଟାନ୍ତ ଦେଇ କହିଲେ,) ମୁନି ସମୁଦ୍ର ପରି ପ୍ରସନ୍ନ ଓ ଗମ୍ଭୀର ହେବା ଆବଶ୍ୟକ। ସେ ଦେଶ ଓ କାଳଦ୍ୱାରା ପ୍ରଭାବିତ ନ ହୋଇ, ଅନ୍ୟର ଆଧିପତ୍ୟରୁ ଦୂରରେ ରହି, କାମ-କ୍ରୋଧ ଓ ରାଗ-ଦ୍ୱେଷଦ୍ୱାରା ବିକ୍ଷୁବ୍ଧ ବା ବିଚଳିତ ନ ହେବା ଉଚିତ। ସେ ଅନନ୍ତ-ଅପାର ସାଗର ପରି ନିଶ୍ଚଳ ଓ ଶାନ୍ତ ହୋଇ ରହିବା ଉଚିତ ॥ ୫ ॥

**ସମୃଦ୍ଧକାମୋ ହୀନୋ ବା ନାରାୟଣପରୋ ମୁନିଃ ।**
**ନୋତ୍ସର୍ପେତ ନ ଶୁଷ୍ୟେତ ସରିଦ୍ଭିରିବ ସାଗରଃ ॥ ୬**

ସମୁଦ୍ର ନଦୀମାନଙ୍କର ପ୍ରଚୁର ଜଳ ପାଇଗଲେ ବି ଉତ୍‌ଫୁଲ୍ଲ ହୋଇ ମର୍ଯ୍ୟାଦା ଲଂଘନ କରେ ନାହିଁ, କି ନଦୀରୁ ଜଳ ନ ପାଇଲେ ଶୁଖିଯାଏ ନାହିଁ। ଭଗବତ୍‌ପରାୟଣ ମୁନି ଠିକ୍ ସେହିପରି ସମୃଦ୍ଧି (ଧନ, ସମ୍ପଦ, ପ୍ରଶଂସା ଆଦି) ପାଇଲେ ଉତ୍‌ଫୁଲ୍ଲ ହେବା ଉଚିତ ନୁହେଁ, କି ସମୃଦ୍ଧି ନ ପାଇଲେ ଦୁଃଖୀ ହେବା ଉଚିତ ନୁହେଁ; ଉଭୟ ଅବସ୍ଥାରେ ସେ ଅବିଚଳିତ ରହିବା ଉଚିତ ॥ ୬ ॥

ଦୃଷ୍ଟ୍ୱା ସ୍ତ୍ରିୟଂ ଦେବମାୟାଂ ତଦ୍ଭାବୈରଜିତେନ୍ଦ୍ରିୟଃ ।
ପ୍ରଲୋଭିତଃ ପତତ୍ୟନ୍ଧେ ତମସ୍ୟଗ୍ନୌ ପତଙ୍ଗବତ୍ ॥ ୭

ଯୋଷିଦ୍ଧିରଣ୍ୟାଭରଣାମ୍ବରାଦି-
ଦ୍ରବ୍ୟେଷୁ ମାୟାରଚିତେଷୁ ମୂଢ଼ଃ ।
ପ୍ରଲୋଭିତାତ୍ମା ହ୍ୟୁପଭୋଗବୁଦ୍ଧ୍ୟା
ପତଙ୍ଗବନ୍ନଶ୍ୟତି ନଷ୍ଟଦୃଷ୍ଟିଃ ॥ ୮

ସ୍ତୋକଂ ସ୍ତୋକଂ ଗ୍ରସେଦ୍ ଗ୍ରାସଂ ଦେହୋ ବର୍ତ୍ତେତ ଯାବତା ।
ଗୃହାନହିଂସନ୍ନାତିଷ୍ଠେଦ୍ ବୃତ୍ତିଂ ମାଧୁକରୀଂ ମୁନିଃ ॥ ୯

ଅଣୁଭ୍ୟଶ୍ଚ ମହଦ୍ଭ୍ୟଶ୍ଚ ଶାସ୍ତ୍ରେଭ୍ୟଃ କୁଶଲୋ ନରଃ ।
ସର୍ବତଃ ସାରମାଦଦ୍ୟାତ୍ ପୁଷ୍ପେଭ୍ୟ ଇବ ଷଟ୍‌ପଦଃ ॥ ୧୦

ସାୟନ୍ତନଂ ଶ୍ୱସ୍ତନଂ ବା ନ ସଂଗୃହ୍ଣୀତ ଭିକ୍ଷିତମ୍ ।
ପାଣିପାତ୍ରୋଦରାମତ୍ରୋ ମକ୍ଷିକେବ ନ ସଙ୍ଗ୍ରହୀ ॥ ୧୧

ସାୟନ୍ତନଂ ଶ୍ୱସ୍ତନଂ ବା ନ ସଂଗୃହ୍ଣୀତ ଭିକ୍ଷୁକଃ ।
ମକ୍ଷିକା ଇବ ସଂଗୃହ୍ଣନ୍ ସହ ତେନ ବିନଶ୍ୟତି ॥ ୧୨

ପଦାପି ଯୁବତୀଂ ଭିକ୍ଷୁର୍ନ ସ୍ପୃଶେଦ୍ ଦାରବୀମପି ।
ସ୍ପୃଶନ୍ କରୀବ ବଧ୍ୟେତ କରିଣ୍ୟା ଅଙ୍ଗସଙ୍ଗତଃ ॥ ୧୩

(ତା'ପରେ ପତଙ୍ଗମାନଙ୍କର ଦୃଷ୍ଟାନ୍ତ ଦେଇ ସେ କହିଲେ,) ପତଙ୍ଗ ଯେପରି ମୋହଗ୍ରସ୍ତ ହୋଇ, ନିଆଁରେ ପଡ଼ି ମରେ, ଅଜିତେନ୍ଦ୍ରିୟ ବ୍ୟକ୍ତି ସେହିପରି ଦେବମାୟାରୂପିଣୀ ସ୍ତ୍ରୀକୁ ଦେଖି, ମୋହଗ୍ରସ୍ତ ହୋଇ ଅନ୍ଧକାରମୟ ଘୋର ନରକରେ ପଡ଼ିଯାଏ । କାମିନୀ, କାଞ୍ଚନ, ବସ୍ତ୍ର, ଆଭୂଷଣ ଆଦି ଯେତେ ବି ଦ୍ରବ୍ୟ ରହିଛି, ସେସବୁ ମାୟାମୟ । ମୂଢ଼ ମନୁଷ୍ୟ ଉପଭୋଗବୁଦ୍ଧି କରି ସେସବୁରେ ଆସକ୍ତ ହୋଇଯାଏ ଏବଂ ପତଙ୍ଗ ଆପେ ଆପେ ଯାଇ ନିଆଁରେ ପଡ଼ିଯିବା ପରି, ସେ ବିବେକଶୂନ୍ୟ ହୋଇ ସେହି ଆସକ୍ତିରେ ପଡ଼ି ନିଜର ସର୍ବନାଶ କରିଦିଏ ॥ ୭, ୮ ॥

(ଭଅଁର ବା ମହୁମାଛିର ଦୃଷ୍ଟାନ୍ତ ଦେଇ କହିଲେ,) ଭଅଁର ଯେପରି ଏ ଫୁଲ ସେ ଫୁଲ ବୁଲି ବୁଲି ଟିକିଏ ଟିକିଏ କରି ରସ ସଂଗ୍ରହ କରେ, ମୁନି ସେହିପରି ଏ ଘର ସେ ଘର ବୁଲି ଅଳ୍ପ ଅଳ୍ପ ଅନ୍ନ ଭିକ୍ଷା କରିବା ଉଚିତ* । ଏହାଫଳରେ ଅନ୍ନଦାତାଙ୍କୁ ଦେବାରେ କଷ୍ଟ ବୋଧ ହେବ ନାହିଁ ଏବଂ ମୁନିଙ୍କର ମଧ୍ୟ ଶରୀର ନିର୍ବାହ ହୋଇଯିବ । ମୁନି ଏହିପରି ମାଧୁକରୀବୃତ୍ତିର ଆଶ୍ରୟ ନେବା ଉଚିତ । ଭ୍ରମର ଯେପରି ଛୋଟବଡ଼ ସବୁ ଫୁଲରୁ ମଧୁ ଗ୍ରହଣ କରେ, ବୁଦ୍ଧିମାନ ମନୁଷ୍ୟ ସେହିପରି ଛୋଟବଡ଼ ସବୁ ଶାସ୍ତ୍ରରୁ ସାର ଗ୍ରହଣ କରିବା ଉଚିତ ॥ ୯, ୧୦ ॥ ସନ୍ନ୍ୟାସୀ ଘର ଘର ବୁଲି ଯେଉଁ ସାମାନ୍ୟ ଭିକ୍ଷା ମାଗି ଆଣିବେ, ସେଥିରୁ କିଛି ଉପରବେଳା ପାଇଁ କିମ୍ବା ଆସନ୍ତାକାଲି ପାଇଁ ସଞ୍ଚୟ ବା ସଂଗ୍ରହ କରି ରଖିବା ଉଚିତ ନୁହେଁ । ଭିକ୍ଷା କରିବାପାଇଁ ଅନ୍ୟ କୌଣସି ପାତ୍ର ନ ଧରି କେବଳ ହାତପାପୁଲିକୁ ପାତ୍ର କରି ଭିକ୍ଷାନ୍ନକୁ ଉଦରରେ ହିଁ ରଖିବେ; କାରଣ ଆମେ ପ୍ରତ୍ୟକ୍ଷ ଦେଖୁଥାଇଁ ଯେ, ମହୁମାଛି ଯେଉଁ ମହୁ ସଂଗ୍ରହ କରି ରଖେ, ତାହା ଅନ୍ୟମାନେ ନେଇଯାଆନ୍ତି ଏବଂ ତା'ସହିତ ମହୁମାଛିର ଜୀବନ ମଧ୍ୟ ବିପଦରେ ପଡ଼ିଯାଏ । ଏହା ଜାଣି ସନ୍ନ୍ୟାସୀମାନେ କୌଣସି ପ୍ରକାର ସଂଗ୍ରହ କରିବା ଉଚିତ ନୁହେଁ ॥ ୧୧, ୧୨ ॥

(ହାତୀର ଦୃଷ୍ଟାନ୍ତ ଦେଇ କହିଲେ,) ସନ୍ନ୍ୟାସୀ କୌଣସି ସ୍ତ୍ରୀକୁ ହାତରେ ସ୍ପର୍ଶ କରିବା ତ ଦୂରର କଥା, ପାଦରେ ବି ସ୍ପର୍ଶ କରିବା ଉଚିତ ନୁହେଁ; ଏପରି କି, କାଠରେ ଗଢ଼ା ନାରୀମୂର୍ତ୍ତିକୁ ବି ସ୍ପର୍ଶ କରିବା ଅନୁଚିତ । ସେ ଯଦି ଏହା ନ ମାନନ୍ତି, ତେବେ ମାଈହାତୀ ପ୍ରତି ଆସକ୍ତ ହୋଇ ଅଣ୍ଡିରାହାତୀ ଯେପରି ବନ୍ଧନରେ ପଡ଼ିଯାଏ, ସନ୍ନ୍ୟାସୀ ବି

* ତାହା ନ କଲେ, ଗୋଟିଏମାତ୍ର ପଦ୍ମର ସୁଗନ୍ଧରେ ଆସକ୍ତ ହୋଇ ତାରି ଭିତରେ ବସିରହି ରସ ସଂଗ୍ରହ କରୁଥିବା ଭ୍ରମର ଯେପରି ସୂର୍ଯ୍ୟାସ୍ତ ପରେ, ପଦ୍ମ ମୁଦି ହୋଇଯିବାଫଳରେ ତା ଭିତରେ ବନ୍ଦୀ ହୋଇ ନଷ୍ଟ ହୋଇଯାଏ, ସ୍ୱାଦ ବାସନାରେ ଗୋଟିଏ ଘରୁ ଅନ୍ନ ଖାଇଲେ ସଂସର୍ଗ ମୋହରେ ପଡ଼ି ସନ୍ନ୍ୟାସୀ ବି ସେହିପରି ନଷ୍ଟ ହୋଇଯିବେ ।

ନାଧିଗଚ୍ଛେତ୍ ସ୍ତ୍ରିୟଂ ପ୍ରାଜ୍ଞଃ କର୍ହିଚିନ୍ମୃତ୍ୟୁମାତ୍ମନଃ ।
ବଲାଧିକୈଃ ସ ହନ୍ୟେତ ଗଜୈରନ୍ୟୈର୍ଗଜୋ ଯଥା ॥ ୧୪

ସେହିପରି ବନ୍ଧନରେ ପଡ଼ିଯିବେ* ॥ ୧୩ ॥ ବିବେକୀ ପୁରୁଷ କୌଣସି ସ୍ତ୍ରୀ ପ୍ରତି ଆସକ୍ତ ହୋଇ ତା'ପଛରେ ଧାଇଁବା ଉଚିତ ନୁହେଁ। କାରଣ ହାତୁଣୀ ପ୍ରତି ଆସକ୍ତ ହୋଇ ତା'ପଛରେ ଧାଇଁଥିବା ହାତୀ ଯେପରି ଅନ୍ୟ ବଳବାନ୍ ହାତୀଦ୍ୱାରା ଆହତ ହୋଇ ମୃତ୍ୟୁମୁଖରେ ପଡ଼େ, ସ୍ତ୍ରୀପଛରେ ଧାଇଁଥିବା ପୁରୁଷ ମଧ୍ୟ ସେହିପରି ମୃତ୍ୟୁର ଶିକାର ହୋଇଥାଏ ॥ ୧୪ ॥

ନ ଦେୟଂ ନୋପଭୋଗ୍ୟଂ ଚ ଲୁବ୍ଧୈର୍ଯଦ୍ ଦୁଃଖସଞ୍ଚିତମ୍ ।
ଭୁଙ୍କ୍ତେ ତଦପି ତଚ୍ଚାନ୍ୟୋ ମଧୁହେବାର୍ଥବିନ୍ମଧୁ ॥ ୧୫

(ମହୁସଂଗ୍ରହକାରୀର ଦୃଷ୍ଟାନ୍ତ ଦେଇ କହିଲେ,) ମହୁମାଛି ସଞ୍ଚୟ କରି ରଖିଥିବା ମହୁକୁ ମହୁସଂଗ୍ରହକାରୀ ଯେପରି ନେଇପଳାଏ, ଠିକ୍ ସେହିପରି ଲୋଭୀ ମନୁଷ୍ୟର ସଞ୍ଚିତ ଧନକୁ ଅନ୍ୟମାନେ ଉପଭୋଗ କରନ୍ତି। ସେ ନିଜେ ସେହି ଧନକୁ ଉପଭୋଗ କରି ପାରେନାହିଁ, କି କାହାରିକୁ ତାହା ଦାନ କରେ ନାହିଁ ॥ ୧୫ ॥ ମହୁମାଛି ନିଜେ ସଞ୍ଚୟ କରି ରଖିଥିବା ମହୁକୁ ନିଜେ ନ ଖାଉଣୁ ମହୁସଂଗ୍ରହକାରୀ ତାହାକୁ ଛଡ଼ାଇ ନିଏ। ଠିକ୍ ସେହିପରି ଗୃହସ୍ଥ ବହୁ କ୍ଳେଶ ସହି ଉପାର୍ଜନ ଓ ସଞ୍ଚୟ କରି ରଖିଥିବା ପଦାର୍ଥକୁ ସେ ନିଜେ ଉପଭୋଗ ନ କରୁଣୁ ସନ୍ନ୍ୟାସୀ ଓ ବ୍ରହ୍ମଚାରୀ ତାହାକୁ ଉପଭୋଗ କରନ୍ତି। କାରଣ ଗୃହସ୍ଥ ହୋଇଥିବାରୁ ଅତିଥି-ଅଭ୍ୟାଗତଙ୍କୁ ପ୍ରଥମେ ଭୋଜନ କରାଇବା ତା'ର କର୍ତ୍ତବ୍ୟ ॥ ୧୬ ॥

ସୁଦୁଃଖୋପାର୍ଜିତୈର୍ବିତ୍ତୈରାଶାସାନାଂ ଗୃହାଶିଷଃ ।
ମଧୁହେବାଗ୍ରତୋ ଭୁଙ୍କ୍ତେ ଯତିର୍ବୈ ଗୃହମେଧିନାମ୍ ॥ ୧୬

ଗ୍ରାମ୍ୟଗୀତଂ ନ ଶୃଣୁୟାଦ୍ ଯତିର୍ବନଚରଃ କ୍ୱଚିତ୍ ।
ଶିକ୍ଷେତ ହରିଣାଦ୍ ବଦ୍ଧାନ୍ମୃଗୟୋର୍ଗୀତମୋହିତାତ୍ ॥ ୧୭

ବ୍ୟାଧର ଗୀତବାଦ୍ୟରେ ମୋହିତ ହୋଇ ହରିଣ ଯାଇ ବ୍ୟାଧର ଜାଲରେ ପଡ଼ିଯାଏ। ହରିଣର ଏହି ଗତିରୁ ମୁଁ ଶିକ୍ଷା କଲି ଯେ, ବନବାସୀ ସନ୍ନ୍ୟାସୀ କଦାପି ଗ୍ରାମ୍ୟଗୀତ (ବିଷୟସମ୍ବନ୍ଧୀୟ ଗୀତ) ଶୁଣିବା ଉଚିତ ନୁହେଁ। ଗ୍ରାମ୍ୟଗୀତ ପ୍ରତି କାନ ଦେଲେ, ସେ ହରିଣ ପରି ସଂସାରବନ୍ଧନରେ ପଡ଼ିଯିବେ ॥ ୧୭ ॥ ଆପଣ ତ ଜାଣିଥିବେ ଯେ, ହରିଣଗର୍ଭରୁ ଜନ୍ମ ହୋଇଥିବା ଋଷ୍ୟଶୃଙ୍ଗ ମୁନି ସ୍ତ୍ରୀମାନଙ୍କର ଗୀତ, ବାଦ୍ୟ ଓ ନୃତ୍ୟ ଆଦିରେ ଆକର୍ଷିତ ହୋଇ ସେମାନଙ୍କ ପାଖରେ ବଶ୍ୟ ଓ ସେମାନଙ୍କ ହାତର ଖେଳଣା ହୋଇଗଲେ ॥ ୧୮ ॥

ନୃତ୍ୟବାଦିତ୍ରଗୀତାନି ଜୁଷନ୍ ଗ୍ରାମ୍ୟାଣି ଯୋଷିତାମ୍ ।
ଆସାଂ କ୍ରୀଡ଼ନକୋ ବଶ୍ୟ ଋଷ୍ୟଶୃଙ୍ଗୋ ମୃଗୀସୁତଃ ॥ ୧୮

ଜିହ୍ୱୟାତିପ୍ରମାଥିନ୍ୟା ଜନୋ ରସବିମୋହିତଃ ।
ମୃତ୍ୟୁମୃଚ୍ଛତ୍ୟସଦ୍‌ବୁଦ୍ଧିର୍ମୀନସ୍ତୁ ବଡ଼ିଶୈର୍ଯଥା ॥ ୧୯

(ଏଥର ମାଛର ଦୃଷ୍ଟାନ୍ତ ଦେଇ କହିଲେ,) ବନିଶୀକଣ୍ଟାରେ ଲାଗିଥିବା ଥୋପ ଗିଳିଦେଇ ମାଛ ଯେପରି ପ୍ରାଣ ହରାଏ, ନିଜ ରସନାକୁ (ଜିଭକୁ) ସଂଯତ କରି ନ ଥିବା ଅବିବେକୀ ମନୁଷ୍ୟ ସେହିପରି ରସନାର ଦାସ ହୋଇ ମୃତ୍ୟୁମୁଖରେ ପଡ଼ିଯାଏ ॥ ୧୯ ॥ ଉପବାସ ପାଳନ କରି ବିବେକୀ ପୁରୁଷ ନିଜର ଅନ୍ୟ ଇନ୍ଦ୍ରିୟମାନଙ୍କୁ ଶୀଘ୍ର ସଂଯତ କରିଦେଇ ପାରନ୍ତି, କିନ୍ତୁ ସେଥିରେ ରସନା ଇନ୍ଦ୍ରିୟ ବଶୀଭୂତ ହୋଇଯାଏ ନାହିଁ। ଭୋଜନ ବନ୍ଦ

ଇନ୍ଦ୍ରିୟାଣି ଜୟନ୍ତ୍ୟାଶୁ ନିରାହାରା ମନୀଷିଣଃ ।
ବର୍ଜୟିତ୍ୱା ତୁ ରସନଂ ତନ୍ନିରନ୍ନସ୍ୟ ବର୍ଦ୍ଧତେ ॥ ୨୦

* ହାତୀ ଧରୁଥିବା ଲୋକେ ଗୋଟିଏ ବଡ଼ ଗାତକୁ କାଠିକୁଟାରେ ଘୋଡ଼ାଇ ଦେଇ ତା'ଉପରେ କନା ଓ କାଗଜରେ ତିଆରି ହାତୁଣୀଟିଏ ଠିଆ କରିଦିଅନ୍ତି। ତାକୁ ସତ ହାତୁଣୀ ଭାବି ହାତୀ ତା'ପାଖକୁ ଯାଏ ଓ ଗାତରେ ପଡ଼ିଯାଏ।

ତାବଜ୍ଜିତେନ୍ଦ୍ରିୟୋ ନ ସ୍ୟାଦ୍ ବିଜିତାନ୍ୟେନ୍ଦ୍ରିୟଃ ପୁମାନ୍ ।
ନ ଜୟେଦ୍ ରସନଂ ଯାବଜ୍ଜିତଂ ସର୍ବଂ ଜିତେ ରସେ ॥ ୨୧

ପିଙ୍ଗଳା ନାମ ବେଶ୍ୟାଽଽସୀଦ୍ ବିଦେହନଗରେ ପୁରା ।
ତସ୍ୟା ମେ ଶିକ୍ଷିତଂ କିଞ୍ଚିନ୍ନିବୋଧ ନୃପନନ୍ଦନ ॥ ୨୨

ସା ସ୍ୱୈରିଣ୍ୟେକଦା କାନ୍ତଂ ସଙ୍କେତ ଉପନେଷ୍ୟତୀ ।
ଅଭୂତ୍ କାଳେ ବହିର୍ଦ୍ୱାରି ବିଭ୍ରତୀ ରୂପମୁତ୍ତମମ୍ ॥ ୨୩

ମାର୍ଗ ଆଗଚ୍ଛତୋ ବୀକ୍ଷ୍ୟ ପୁରୁଷାନ୍ ପୁରୁଷର୍ଷଭ ।
ତାଞ୍ଛୁଳ୍କଦାନ୍ ବିତ୍ତବତଃ କାନ୍ତାନ୍ ମେନେଽର୍ଥକାମୁକା ॥ ୨୪

ଆଗତେଷ୍ୱପଯାତେଷୁ ସା ସଙ୍କେତୋପଜୀବିନୀ ।
ଅପ୍ୟନ୍ୟୋ ବିତ୍ତବାନ୍ କୋଽପି ମାମୁପୈଷ୍ୟତି ଭୂରିଦଃ ॥ ୨୫

ଏବଂ ଦୁରାଶୟା ଧ୍ୱସ୍ତନିଦ୍ରା ଦ୍ୱାର୍ଯ୍ୟବଲମ୍ବତୀ ।
ନିର୍ଗଚ୍ଛନ୍ତୀ ପ୍ରବିଶତୀ ନିଶୀଥଂ ସମପଦ୍ୟତ ॥ ୨୬

ତସ୍ୟା ବିତ୍ତାଶୟା ଶୁଷ୍ୟଦ୍ବକ୍ତ୍ରାୟା ଦୀନଚେତସଃ ।
ନିର୍ବେଦଃ ପରମୋ ଜଜ୍ଞେ ଚିନ୍ତାହେତୁଃ ସୁଖାବହଃ ॥ ୨୭

କରିଦେଲେ ବରଂ ରସନା ଅଧିକ ପ୍ରବଳ ହୋଇ ଉଠେ ॥ ୨୦ ॥ ଯେପର୍ଯ୍ୟନ୍ତ ରସନେନ୍ଦ୍ରିୟକୁ ବଶ କରାଯାଇ ନାହିଁ, ସେପର୍ଯ୍ୟନ୍ତ ଅନ୍ୟସବୁ ଇନ୍ଦ୍ରିୟଙ୍କ ଉପରେ ବିଜୟ ପ୍ରାପ୍ତ କରି ମଧ୍ୟ ମନୁଷ୍ୟ ଜିତେନ୍ଦ୍ରିୟ ହୋଇପାରେ ନାହିଁ। କିନ୍ତୁ ଯଦି ରସନେନ୍ଦ୍ରିୟକୁ ବଶ କରି ଦିଆଗଲା, ତେବେ ଜାଣନ୍ତୁ, ଅନ୍ୟସବୁ ଇନ୍ଦ୍ରିୟ ବଶ ହୋଇଗଲେ ॥ ୨୧ ॥

ହେ ରାଜନ୍ ! ପ୍ରାଚୀନକାଳରେ ବିଦେହନଗରୀ ମିଥିଳାରେ ପିଙ୍ଗଳା ନାମରେ ଜଣେ ବେଶ୍ୟା ରହୁଥିଲା। ମୁଁ ତା'ଠାରୁ ଯାହା ଶିକ୍ଷା ଗ୍ରହଣ କରିଛି, ତାହା କହୁଛି, ମନ ଦେଇ ଶୁଣନ୍ତୁ ॥ ୨୨ ॥ ସେ ତ ସ୍ୱେଚ୍ଛାଚାରିଣୀ ଥିଲା, ରୂପବତୀ ମଧ୍ୟ ଥିଲା । ଥରେ ରାତିରେ କୌଣସି ପରପୁରୁଷକୁ ଆକର୍ଷିତ କରି ନିଜର କେଳିଗୃହକୁ ନେଇଯିବା ନିମନ୍ତେ ସେ ସୁନ୍ଦର ବସ୍ତ୍ର ଓ ଆଭୂଷଣ ପିନ୍ଧି, ସାଜସଜ୍ଜା ହୋଇ, ନିଜ ଦାଣ୍ଡଦୁଆର ପାଖରେ ବହୁସମୟ ଧରି ଠିଆ ହୋଇ ରହିଲା ॥ ୨୩ ॥ ତାର ତ ଧନ ପାଇବାର ଲାଳସା ଥିଲା, ତେଣୁ ସେହି ବାଟଦେଇ ଯେକୌଣସି ପୁରୁଷ ଆସୁଥିଲା, ଉକ୍ତ ଧନଲୋଲୁପା କାମିନୀ ତାକୁ ଦେଖି ଭାବୁଥିଲା, ''ଏ ନିଶ୍ଚୟ ଜଣେ ଧନୀ ଲୋକ ହୋଇଥିବେ; ଟଙ୍କାପଇସା ଦେଇ ମୋତେ ଉପଭୋଗ କରିବାପାଇଁ ଏ ଲୋକ ଆସୁଛନ୍ତି।'' ॥ ୨୪ ॥ ପଥିକ ତା'ର ନିଜ ବାଟରେ ଚାଲିଯିବା ପରେ, ନିଜର ଭାବଭଙ୍ଗୀ ଦେଖାଇ ଅନ୍ୟମାନଙ୍କୁ ଫାଲରେ ପକାଇ ଜୀବିକା ଅର୍ଜନ କରୁଥିବା ସେହି ବେଶ୍ୟା ସେଆଡ଼କୁ ଆସୁଥିବା ଅନ୍ୟ କୌଣସି ଦ୍ୱିତୀୟ ଲୋକକୁ ଦେଖି ଭାବୁଥିଲା, ''ଇଏ ମୋରି ପାଖକୁ ହିଁ ଆସୁଛନ୍ତି; ଇଏ ମୋତେ ବହୁତ ଧନ ଦେବେ।'' କିନ୍ତୁ ସେ ମଧ୍ୟ ତାକୁ ଅତିକ୍ରମ କରି ଆଗକୁ ଚାଲିଯିବା ପରେ ସେ ଭାବୁଥିଲା, ''ଏଥର ନିଶ୍ଚୟ କେହି ଜଣେ ବଡ଼ ଧନୀ ଲୋକ ଆସିବେ ଏବଂ ମୋତେ ବହୁତ ଧନ ଦେବେ।'' ॥ ୨୫ ॥

ତା'ମନରେ ଏପରି ଦୁରାଶା ବଢ଼ିଚାଲିଲା। ସେ ତା'ଦୁଆରମୁହଁରେ ବହୁସମୟ ଧରି ଚାହିଁରହିଲା । ତା'ଆଖିକୁ ନିଦ ଆସିଲା ନାହିଁ। ସେ କେତେବେଳେ ଘରଭିତରକୁ ଚାଲିଯାଉଥାଏ ତ, କେତେବେଳେ ବାହାରକୁ ଚାଲିଆସୁଥାଏ। ଏପରିଭାବରେ ଅଧରାତି ବିତିଗଲା ॥ ୨୬ ॥ ହେ ରାଜନ୍ ! ସତରେ, ଆଶା—ତା'ଭିତରେ ପୁଣି ଧନଆଶା ହେଉଛି ଅତ୍ୟନ୍ତ ମନ୍ଦ। ଧନୀଗ୍ରାହକ କେବେ ଆସିବେ ବୋଲି ଚାହିଁ ଚାହିଁ ତାର ମୁହଁ ଶୁଖିଗଲା; ଚିତ୍ତ ବ୍ୟାକୁଳ ହୋଇଗଲା । ଦୁଃଖରେ ନିଜର ତୁଚ୍ଛ ବୃତ୍ତି ପ୍ରତି ତା'ମନରେ ବୈରାଗ୍ୟ ଆସିଗଲା। ସେହି ବୈରାଗ୍ୟ ହିଁ ତାର ସୁଖର କାରଣ

ତସ୍ୟା ନିର୍ବିଣ୍ଣଚିତ୍ତାୟା ଗୀତଂ ଶୃଣୁ ଯଥା ମମ ।
ନିର୍ବେଦ ଆଶାପାଶାନାଂ ପୁରୁଷସ୍ୟ ଯଥା ହ୍ୟସିଃ ॥ ୨୮

ନ ହ୍ୟଙ୍ଗାଜାତନିର୍ବେଦୋ ଦେହବନ୍ଧଂ ଜିହାସତି ।
ଯଥା ବିଜ୍ଞାନରହିତୋ ମନୁଜୋ ମମତାଂ ନୃପ ॥ ୨୯

*ପିଙ୍ଗଳୋବାଚ*

ଅହୋ ମେ ମୋହବିତତିଂ ପଶ୍ୟତାବିଜିତାତ୍ମନଃ ।
ଯା କାନ୍ତାଦସତଃ କାମଂ କାମୟେ ଯେନ ବାଲିଶା ॥ ୩୦

ସନ୍ତଂ ସମୀପେ ରମଣଂ ରତିପ୍ରଦଂ
ବିତ୍ତପ୍ରଦଂ ନିତ୍ୟମିମଂ ବିହାୟ ।
ଅକାମଦଂ ଦୁଃଖଭୟାଧିଶୋକ-
ମୋହପ୍ରଦଂ ତୁଚ୍ଛମହଂ ଭଜେଽଜ୍ଞା ॥ ୩୧

ଅହୋ ମୟାଽଽତ୍ମା ପରିତାପିତୋ ବୃଥା
ସାଙ୍କେତ୍ୟବୃତ୍ତ୍ୟାତିବିଗର୍ହ୍ୟବାର୍ତ୍ତୟା ।
ସ୍ତ୍ରୈଣାନ୍ନରାଦ୍ ଯାର୍ଥତୃଷୋଽନୁଶୋଚ୍ୟାତ୍
କ୍ରୀତେନ ବିତ୍ତଂ ରତିମାତ୍ମନେଚ୍ଛତୀ ॥ ୩୨

ଯଦସ୍ଥିଭିର୍ନିର୍ମିତବଂଶବଂଶ୍ୟ-
ସ୍ଥୂଣଂ ତ୍ୱଚା ରୋମନଖୈଃ ପିନଦ୍ଧମ୍ ।
କ୍ଷରନ୍ନବଦ୍ୱାରମଗାରମେତଦ୍
ବିଣ୍ମୂତ୍ରପୂର୍ଣ୍ଣଂ ମଦୁପୈତି କାନ୍ୟା ॥ ୩୩

ବିଦେହାନାଂ ପୁରେ ହ୍ୟସ୍ମିନ୍ନହମେକୈବ ମୂଢଧୀଃ ।
ଯାନ୍ୟମିଚ୍ଛନ୍ତ୍ୟସତ୍ୟସ୍ମାଦାତ୍ମଦାତ୍ କାମମଚ୍ୟୁତାତ୍ ॥ ୩୪

ସୁହୃତ୍ ପ୍ରେଷ୍ଠତମୋ ନାଥ ଆତ୍ମା ଚାୟଂ ଶରୀରିଣାମ୍ ।
ତଂ ବିକ୍ରୀୟାତ୍ମନୈବାହଂ ରମେଽନେନ ଯଥା ରମା ॥ ୩୫

କିୟତ୍ ପ୍ରିୟଂ ତେ ବ୍ୟଭଜନ୍ କାମା ଯେ କାମଦା ନରାଃ ।
ଆଦ୍ୟନ୍ତବନ୍ତୋ ଭାର୍ଯ୍ୟାୟା ଦେବା ବା କାଳବିଦ୍ରୁତାଃ ॥ ୩୬

ହୋଇଗଲା ॥ ୨୭ ॥ ମନରେ ଏପରି ବୈରାଗ୍ୟ ଜାଗ୍ରତ ହେବାରୁ ପିଙ୍ଗଳାମୁହଁରୁ ଗୀତଟିଏ ବାହାରିପଡ଼ିଲା । ସତରେ ଆଶାରୂପୀ ଜାଲକୁ କାଟିଦେବା ନିମନ୍ତେ ବୈରାଗ୍ୟ ହିଁ ହେଉଛି ତୀକ୍ଷ୍ଣଧାର ଖଡ୍ଗ । ବୈରାଗ୍ୟ ବିନା ଦୁଃଖର ନିବୃତ୍ତି ହୁଏ ନାହିଁ । ହେ ରାଜନ୍ ! ଅଜ୍ଞାନୀ ପୁରୁଷ ଯେପରି ମମତା ଛାଡ଼ିବାକୁ ଚାହେଁନା, ବୈରାଗ୍ୟ ଉଦୟ ହୋଇ ନ ଥିବା ମନୁଷ୍ୟ ସେହିପରି ଶରୀର ସମ୍ବନ୍ଧୀୟ ବନ୍ଧନକୁ କାଟିଦେବାକୁ ଚାହେଁନା ॥ ୨୮, ୨୯ ॥

ପିଙ୍ଗଳା ଗାଇଲା—

ମୁଁ ନୁହେଁ କେଡ଼େ ବୁଦ୍ଧିହୀନ । ହୋଇଲି ଇନ୍ଦ୍ରିୟ ଅଧୀନ ॥
କାମନା ପୂରାଇବା ପାଇଁ । ପରପୁରୁଷେ ଅଛି ଚାହିଁ ॥
ଯେ ନର ନୁହେଁ ମୋର ପତି । ତା'ଠାରେ ରଖିଛି ମୁଁ ମତି ॥ ୩୦ ॥
ମୋ କାନ୍ତ ଶାଶ୍ୱତ ରୂପରେ । ଅଛନ୍ତି ସଦା ମୋ ପାଖରେ ॥
ସେ ସୁଖ ପ୍ରଦାନ କରନ୍ତି । ଲକ୍ଷ୍ମୀପତି ବି ସେ ଅଟନ୍ତି ॥
ସେ ଥାଉଁ ହୃଦୟରେ ମୋର । ମୁଁ ନୁହେଁ କେଡ଼େ ମୂର୍ଖ ଘୋର ॥
ତାଙ୍କୁ ନ ରସି ଚାହେଁ ଆନେ । ଅସମର୍ଥ ଯେ ଭୋଗ-ଦାନେ ॥
ଯେ ବ୍ୟକ୍ତି ଦୁଃଖ, ବ୍ୟାଧି, ଭୟ । ଶୋକ, ସନ୍ତାପ ପୁଣି ମୋହ ॥
ସେପରି ଲୋକଙ୍କୁ ସେବନ । କରି ଯାପୁଛି ମୁଁ ଜୀବନ ॥ ୩୧ ॥
ଏ ବେଶ୍ୟାବୃତ୍ତିର ଆଶ୍ରୟ । ଅଟଇ ବଡ଼ ନିନ୍ଦନୀୟ ॥
ଏପରି ଜୀବିକା ମୁଁ ଧରି । ଏ ଦେହ ଦେଲି ବିକ୍ରି କରି ॥
ଲୋଭୀ, ଲମ୍ପଟ, ନିନ୍ଦନୀୟ । ମୋ ଦେହ କରିନେଲେ କ୍ରୟ ॥
ଏ ଦେହ ଧରି ମୂର୍ଖ ମୁହିଁ । ଧନ ଓ ରତିସୁଖ ଚାହିଁ ॥
ଆତୁରି ବସିଛି ଅନାଇଁ । ମୋ ସମ ହୀନ କେହି ନାହିଁ ॥ ୩୨ ॥
ବାଉଁଶ ଖୁଣ୍ଟ, ଶେଣି ଜୁଏ । ଘର ଯେପରି ଠିଆ ହୁଏ ॥
ଚର୍ମ, ରୁଧିର, ଅସ୍ଥି ଧରି । ଏ ଦେହ ଗଢ଼ା ସେହିପରି ॥
ନଖ, ଲୋମରେ ଆଚ୍ଛାଦିତ । ନବଦ୍ୱାରରୁ ମଳମୂତ୍ର ॥
ଏ ନିନ୍ଦ୍ୟ ଦେହରୁ ବୋହୁଛି । ତଥାପି ମୋ ପରି କେ ଅଛି ॥
ଦେହଟା ମଣେ ଅତି ପ୍ରିୟ । ସତରେ ମୁଁ କି ମୂର୍ଖ ନୁହଁ ॥ ୩୩ ॥
ଏ ଯେଉଁ ବିଦେହ ନଗରୀ । ଜୀବନମୁକ୍ତଙ୍କର ପୁରୀ ॥
ଏପରି ପୁରେ ରହିଥାଇ । ମୋ ପରି ମୂର୍ଖ କେହି ନାହିଁ ॥
ଆତ୍ମଦାନୀ ଓ ଅବିନାଶୀ । ପୁରୁଷେ ନୋହି ଅଭିଳାଷୀ ॥
ମୁଁ ମୂଢ଼ା ପରପୁରୁଷରେ । ସର୍ବଦା ଅଭିଳାଷ କରେ ॥ ୩୪ ॥
ସକଳ ପ୍ରାଣୀଙ୍କର ସ୍ୱାମୀ । ସବୁରି ବନ୍ଧୁ, ଅନ୍ତର୍ଯ୍ୟାମୀ ॥
ମଙ୍ଗଳକରତା ସବୁରି । ମିତ୍ର ଓ ଆତ୍ମା ସେହି ହରି ॥
ନିଜକୁ ଦେଇ ତାଙ୍କୁ କିଣି । ହୋଇବି ତାଙ୍କରି ଘରଣୀ ॥
ଲକ୍ଷ୍ମୀଙ୍କ ପରି ତାଙ୍କ ସଙ୍ଗେ । ବିହାର କରିବି ମୁଁ ରଙ୍ଗେ ॥ ୩୫ ॥
କେ ଅବା କାମ-ଭୋଗ ଦେଇ । ଭାର୍ଯ୍ୟାକୁ ତୋଷିଣ ପାରଇ ॥
ସଂସାରେ ନାହିଁ କେହି ବ୍ୟକ୍ତି । ଭୋଗେ ପାଇଛି ଯେ ତୃପତି ॥
ସମସ୍ତେ ଆଦି-ଅନ୍ତବନ୍ତ । ସମସ୍ତେ କାଳକବଳିତ ॥
ମହୀମଣ୍ଡଳେ ଜନ୍ମ ହୋଇ । ଦେବତା ହେଲେ ବି ମରଇ ॥ ୩୬ ॥

ନୂନଂ ମେ ଭଗବାନ୍ ପ୍ରୀତୋ ବିଷ୍ଣୁଃ କେନାପି କର୍ମଣା ।
ନିର୍ବେଦୋଽୟଂ ଦୁରାଶାୟା ଯନ୍ମେ ଜାତଃ ସୁଖାବହଃ ॥ ୩୭

ମୈବଂ ସ୍ୟୁର୍ମନ୍ଦଭାଗ୍ୟାୟାଃ କ୍ଲେଶା ନିର୍ବେଦହେତବଃ ।
ଯେନାନୁବନ୍ଧଂ ନିର୍ହୃତ୍ୟ ପୁରୁଷଃ ଶମମୃଚ୍ଛତି ॥ ୩୮

ତେନୋପକୃତମାଦାୟ ଶିରସା ଗ୍ରାମ୍ୟସଙ୍ଗତାଃ ।
ତ୍ୟକ୍ତ୍ୱା ଦୁରାଶାଃ ଶରଣଂ ବ୍ରଜାମି ତମଧୀଶ୍ୱରମ୍ ॥ ୩୯

ସନ୍ତୁଷ୍ଟା ଶ୍ରଦ୍ଦଧତ୍ୟେତଦ୍ ଯଥାଲାଭେନ ଜୀବତୀ ।
ବିହରାମ୍ୟମୁନୈବାହମାତ୍ମନା ରମଣେନ ବୈ ॥ ୪୦

ସଂସାରକୂପେ ପତିତଂ ବିଷୟୈର୍ମୁଷିତେକ୍ଷଣମ୍ ।
ଗ୍ରସ୍ତଂ କାଲାହିନାଽଽତ୍ମାନଂ କୋଽନ୍ୟସ୍ତ୍ରାତୁମଧୀଶ୍ୱରଃ ॥ ୪୧

ଆତ୍ମୈବ ହ୍ୟାତ୍ମନୋ ଗୋପ୍ତା ନିର୍ବିଦ୍ୟେତ ଯଦାଖିଲାତ୍ ।
ଅପ୍ରମତ୍ତ ଇଦଂ ପଶ୍ୟେଦ୍ ଗ୍ରସ୍ତଂ କାଲାହିନା ଜଗତ୍ ॥ ୪୨

*ବ୍ରାହ୍ମଣ ଉବାଚ*

ଏବଂ ବ୍ୟବସିତମତିର୍ଦୁରାଶାଂ କାନ୍ତତର୍ଷଜାମ୍ ।
ଛିତ୍ତ୍ୱୋପଶମମାସ୍ଥାୟ ଶଯ୍ୟାମୁପବିବେଶ ସା ॥ ୪୩

ଆଶା ହି ପରମଂ ଦୁଃଖଂ ନୈରାଶ୍ୟଂ ପରମଂ ସୁଖମ୍ ।
ଯଥା ସଞ୍ଛିଦ୍ୟ କାନ୍ତାଶାଂ ସୁଖଂ ସୁଷ୍ୱାପ ପିଙ୍ଗଳା ॥ ୪୪

ନିଶ୍ଚେ ମୋ ଶୁଭକର୍ମ ବଳେ । ବିଷ୍ଣୁ ପ୍ରସନ୍ନ ମୋ ଉପରେ ॥
ତେଣୁ ମୋ ଦୁରାଶା ଭିତରେ । ବୈରାଗ୍ୟ ଜାଗିଲା ଅନ୍ତରେ ॥
ସଂସାର ପ୍ରତି ମୁଁ ବିମୁଖ । ହେଲେ ହିଁ ପାଇବଇଁ ସୁଖ ॥ ୩୭ ॥
ମୋ ମନେ ଯେଉଁ ଦୁଃଖ ହେଲା । ତାହା ହିଁ ବଇରାଗ୍ୟ ଦେଲା ॥
ବୈରାଗ୍ୟ କରେ ଶାନ୍ତି ଦାନ । କାଟିଣ ସଂସାର ବନ୍ଧନ ॥
ଏଣୁ ନିଜକୁ ଅଭାଗିନୀ । ଆଉ ମୁଁ କେବେ ଭାବିବିନି ॥ ୩୮ ॥
ପ୍ରଭୁଙ୍କ ଏହି ଉପକାର । ମାନିବି ହୋଇ ନତଶିର ॥
ଛାଡ଼ି ବିଷୟ ସୁଖ ଆଶା । କରିବି ପ୍ରଭୁଙ୍କୁ ଭରସା ॥
ଜଗଦୀଶ୍ୱରଙ୍କ ଶରଣ । ଆନନ୍ଦେ କରିବି ଗ୍ରହଣ ॥ ୩୯ ॥
ପ୍ରାରବ୍ଧବଳେ ଯାହା ପାଇ । ବଞ୍ଚିବି ସୁଖେ ତାହା ଖାଇ ॥
ଶ୍ରଦ୍ଧା ସନ୍ତୋଷ ଧରି ହୃଦେ । ଜୀବନ କାଟିବି ଆନନ୍ଦେ ॥
ଆନପୁରୁଷେ ନ ଗ୍ରହିଁବି । ପ୍ରଭୁଙ୍କ ତୁଲେ ବିହରିବି ॥
ଆତ୍ମସ୍ୱରୂପ ହୃଦେଶ୍ୱର । ତାଙ୍କଠୁଁ ବଳି କିଏ ମୋର ॥ ୪୦ ॥
ଏ ଜୀବ ମୋହ ଅନ୍ଧକାରେ । ପଡ଼ିଛି ସଂସାର କୂପରେ ॥
ବିଷୟ ତାକୁ ଅନ୍ଧ କରି । ରଖିଛି ଚଉଦିଗ ଘେରି ॥
କାଳସ୍ୱରୂପ ଅଜଗର । କବଳ କରିଛି ତା' ଶିର ॥
ଏ କୂପୁଁ ଉଦ୍ଧାରିବା ପାଇଁ । ପ୍ରଭୁଙ୍କ ଛଡ଼ା କେହି ନାହିଁ ॥ ୪୧ ॥
ବିଷୟ ପ୍ରତି ବଇରାଗ୍ୟ । ଆସିଲେ ଜାଣ ଉଦେ ଭାଗ୍ୟ ॥
ଜୀବ ରମିଲେ ବୈରାଗ୍ୟରେ । ନିଜେ ନିଜକୁ ରକ୍ଷା କରେ ॥
କାଳରୂପକ ଅଜଗର । ମୁଖରେ ପଡ଼ିଛି ସଂସାର ॥
ଏକଥା ଯେହୁ ଦେଖିପାରେ । ସେ ନିଜେ ନିଜକୁ ଉଦ୍ଧରେ ॥ ୪୨ ॥

ଅବଧୂତ ଦତ୍ତାତ୍ରେୟ କହିଲେ—ହେ ରାଜନ୍ ! ଏପରି ସ୍ଥିର କରି ପିଙ୍ଗଳା ତାର ଧନଲୋଭରୁ ଜାତ ଦୁରାଶା ଏବଂ ଧନୀକମାନଙ୍କ ସହିତ ମିଳନର ଲାଳସା ପରିତ୍ୟାଗ କରିଦେଲା ଏବଂ ଶାନ୍ତଚିତ୍ତ ହୋଇ ଯାଇ ନିଜ ଶେଯରେ ଶୋଇପଡ଼ିଲା ॥ ୪୩ ॥

ସତରେ ଆଶା ହିଁ ହେଉଛି ସବୁଠାରୁ ବଡ଼ ଦୁଃଖ ଏବଂ ଆଶା ନ ରଖିବା ହିଁ ହେଉଛି ସବୁଠାରୁ ବଡ଼ ସୁଖ । ପିଙ୍ଗଳା ପୁରୁଷସୁଖର ଆଶା ପରିତ୍ୟାଗ କରିଦେବାରୁ ହିଁ ସୁଖ ଓ ଶାନ୍ତିରେ ଶୋଇପାରିଲା ॥ ୪୪ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାମେକାଦଶସ୍କନ୍ଧେ*
*ଅଷ୍ଟମୋଽଧ୍ୟାୟଃ ॥ ୮ ॥*



# ଅଥ ନବମୋଽଧ୍ୟାୟଃ

## କୁରରଠାରୁ ଭୃଙ୍ଗୀ (କୁମ୍ଭାରପୋକ) ପର୍ଯ୍ୟନ୍ତ ସାତ ଗୁରୁଙ୍କ କଥା

*ବ୍ରାହ୍ମଣ ଉବାଚ*

**ପରିଗ୍ରହୋ ହି ଦୁଃଖାୟ ଯଦ୍ ଯତ୍ପ୍ରିୟତମଂ ନୃଣାମ୍ ।**
**ଅନନ୍ତଂ ସୁଖମାପ୍ନୋତି ତଦ୍ ବିଦ୍ୱାନ୍ ଯସ୍ତ୍ୱକିଞ୍ଚନଃ ॥ ୧**

ଅବଧୂତ ଦତ୍ତାତ୍ରେୟ କହିଲେ—ମନୁଷ୍ୟମାନେ ସେମାନଙ୍କର ପ୍ରିୟବସ୍ତୁ ସଂଗ୍ରହ-ପରିଗ୍ରହ କରିଥାନ୍ତି। ସେହି ସଂଗ୍ରହ-ପରିଗ୍ରହ ହିଁ ସେମାନଙ୍କର ଦୁଃଖର କାରଣ ହୋଇଯାଏ। କିନ୍ତୁ ଯେ ଅକିଞ୍ଚନ ଓ ଅପରିଗ୍ରହୀ, ସେ ହିଁ ବିଦ୍ୱାନ ଏବଂ ସେ ହିଁ ଆନନ୍ଦ ଅନୁଭବ କରନ୍ତି। ତେଣୁ କଲ୍ୟାଣକାମୀ ମନୁଷ୍ୟ ସଂଗ୍ରହଠାରୁ ଦୂରରେ ରହିବା ଉଚିତ ॥ ୧ ॥

**ସାମିଷଂ କୁରରଂ ଜଘ୍ନୁର୍ବଲିନୋ ଯେ ନିରାମିଷାଃ ।**
**ତଦାମିଷଂ ପରିତ୍ୟଜ୍ୟ ସ ସୁଖଂ ସମବିନ୍ଦତ ॥ ୨**

(କୁରର ପକ୍ଷୀର ଦୃଷ୍ଟାନ୍ତ ଦେଇ ସେ କହିଲେ,) ଗୋଟିଏ କୁରର ପକ୍ଷୀକୁ କୌଣସି ଏକ ସ୍ଥାନରେ ଖଣ୍ଡେ ମାଂସ ମିଳିଗଲା। ସେ ମାଂସ ଧରିଛି ଦେଖି ଅନ୍ୟାନ୍ୟ ମାଂସଲୋଭୀ ପକ୍ଷୀମାନେ ତାକୁ ଆକ୍ରମଣ କଲେ। ସେ ବିଚରା ମାଂସଖଣ୍ଡଟି ଫୋପାଡ଼ିଦେବାରୁ ସେମାନଙ୍କ ଆକ୍ରମଣରୁ ରକ୍ଷା ପାଇଗଲା। ଏଥିରୁ ଶିକ୍ଷା ଗ୍ରହଣ କରିବା କଥା ଯେ, ସଂଗ୍ରହ ହିଁ ହେଉଛି ସବୁ ବିପଦର କାରଣ ॥ ୨ ॥

**ନ ମେ ମାନାବମାନୌ ସ୍ତୋ ନ ଚିନ୍ତା ଗେହପୁତ୍ରିଣାମ୍ ।**
**ଆତ୍ମକ୍ରୀଡ଼ ଆତ୍ମରତିର୍ବିଚରାମୀହ ବାଳବତ୍ ॥ ୩**

**ଦ୍ୱାବେବ ଚିନ୍ତୟା ମୁକ୍ତୌ ପରମାନନ୍ଦ ଆପ୍ଲୁତୌ ।**
**ଯୋ ବିମୁଗ୍ଧୋ ଜଡ଼ୋ ବାଳୋ ଯୋ ଗୁଣେଭ୍ୟଃ ପରଂ ଗତଃ ॥ ୪**

(ଶିଶୁର ଦୃଷ୍ଟାନ୍ତ ଦେଇ ଅବଧୂତ କହିଲେ,) ସରଳ ଶିଶୁ ଯେପରି ନିଶ୍ଚିନ୍ତ ହୋଇ ନିଜେ ନିଜେ ଖେଳେ, ମୁଁ ମଧ୍ୟ ସେହିପରି ଆତ୍ମାନନ୍ଦରେ ଭୋଳ ରହେ। ମୋ ଉପରେ ମାନ-ଅପମାନର କୌଣସି ପ୍ରଭାବ ପଡ଼େ ନାହିଁ, କି ମୋର ଘର-ପରିବାର କଥା ଚିନ୍ତା ନ ଥାଏ। ସଂସାରରେ ଦୁଇ ପ୍ରକାର ବ୍ୟକ୍ତି ଚିନ୍ତାମୁକ୍ତ ହୋଇ ରହନ୍ତି। ସେମାନେ ହେଲେ– ସରଳ ଅବୋଧ ଶିଶୁ ଏବଂ ଗୁଣାତୀତ ପୁରୁଷ। ଏ ଉଭୟେ ପରମ ଆନନ୍ଦରେ ମଗ୍ନ ରହନ୍ତି ॥ ୩,୪ ॥

**କ୍ୱଚିତ୍ କୁମାରୀ ତ୍ୱାତ୍ମାନଂ ବୃଣାନାନ୍ ଗୃହମାଗତାନ୍ ।**
**ସ୍ୱୟଂ ତାନର୍ହୟାମାସ କ୍ୱାପି ଯାତେଷୁ ବନ୍ଧୁଷୁ ॥ ୫**

(ତା'ପରେ କୁମାରୀକନ୍ୟାର ଦୃଷ୍ଟାନ୍ତ ଦେବାକୁ ଯାଇ କହିଲେ,) ଥରେ ଗୋଟିଏ ଝିଅକୁ ବୋହୂ କରି ନେବାର ପ୍ରସ୍ତାବ ଘେନି ଅନ୍ୟ ଗ୍ରାମର କେତେଜଣ ଲୋକ ଝିଅର ଘରେ ପହଞ୍ଚିଲେ। ସେତେବେଳକୁ କେବଳ ଝିଅଟି ଛଡ଼ା ଘରର ଅନ୍ୟ ସମସ୍ତେ କୌଣସି କାମରେ ବାହାରକୁ ଚାଲିଯାଇଥିଲେ। ତେଣୁ ଅତିଥିସତ୍କାର ଦାୟିତ୍ୱ ଝିଅଟି ଉପରେ ପଡ଼ିଲା। (ଗରିବ ଘର, ଚାଉଳ ନ ଥିଲା।) କୁଣିଆମାନଙ୍କୁ ଭାତ ଗଣ୍ଡିଏ ରାନ୍ଧି ଖାଇବାକୁ ଦେବ ବୋଲି ଝିଅଟି ଧାନ କୁଟିବାକୁ ଲାଗିଲା। ଝିଅଟି ହାତରେ କେତେ ପଟ ଶଙ୍ଖା ପିନ୍ଧିଥାଏ, ଧାନ କୁଟିବାବେଳେ ଶଙ୍ଖାରେ ଶଙ୍ଖା ବାଜି ଜୋରରେ ଶବ୍ଦ ହେଲା। (ଝିଅଟି ଦେଖିଲା, ସେହି ଶବ୍ଦରୁ ସେ ନିଜେ ଧାନ କୁଟୁଥିବା କଥା ଜଣାପଡ଼ିଯିବ। ଘରର ଦରିଦ୍ରତା ବି ଜଣାପଡ଼ିଯିବ।)

ତେଷାମଭ୍ୟବହାରାର୍ଥଂ ଶାଲୀନ୍ ରହସି ପାର୍ଥିବ ।
ଅବଘ୍ନନ୍ତ୍ୟାଃ ପ୍ରକୋଷ୍ଠସ୍ଥାଶ୍ଚକ୍ରୁଃ ଶଙ୍ଖାଃ ସ୍ୱନଂ ମହତ୍ ॥ ୬

ସା ତଜ୍ଜୁଗୁପ୍ସିତଂ ମତ୍ୱା ମହତୀ ବ୍ରୀଡ଼ିତା ତତଃ ।
ବଭଞ୍ଜୈକୈକଶଃ ଶଙ୍ଖାନ୍ ଦ୍ୱୌ ଦ୍ୱୌ ପାଣ୍ୟୋରଶେଷୟତ୍ ॥ ୭

ଉଭୟୋରପ୍ୟଭୂଦ୍ ଘୋଷୋ ହ୍ୟବଘ୍ନନ୍ତ୍ୟାଃ ସ୍ମ ଶଙ୍ଖୟୋଃ ।
ତତ୍ରାପ୍ୟେକଂ ନିରଭିଦଦେକସ୍ମାନ୍ନାଭବଦ୍ ଧ୍ୱନିଃ ॥ ୮

ଅନ୍ୱଶିକ୍ଷମିମଂ ତସ୍ୟା ଉପଦେଶମରିନ୍ଦମ ।
ଲୋକାନନୁଚରନ୍ନେତାଁଲ୍ଲୋକତତ୍ତ୍ୱବିବିତ୍ସୟା ॥ ୯

ବାସେ ବହୂନାଂ କଲହୋ ଭବେଦ୍ ବାର୍ତ୍ତା ଦ୍ୱୟୋରପି ।
ଏକ ଏବ ଚରେତ୍ତସ୍ମାତ୍ କୁମାର୍ଯ୍ୟା ଇବ କଙ୍କଣଃ ॥ ୧୦

ମନ ଏକତ୍ର ସଂଯୁଜ୍ୟାଜ୍ଜିତଶ୍ୱାସୋ ଜିତାସନଃ ।
ବୈରାଗ୍ୟାଭ୍ୟାସଯୋଗେନ ଧ୍ରିୟମାଣମତନ୍ଦ୍ରିତଃ ॥ ୧୧

ଯସ୍ମିନ୍ ମନୋ ଲବ୍ଧପଦଂ ଯଦେତ-
ଚ୍ଛନୈଃ ଶନୈର୍ମୁଞ୍ଚତି କର୍ମରେଣୂନ୍ ।
ସତ୍ତ୍ୱେନ ବୃଦ୍ଧେନ ରଜସ୍ତମଶ୍ଚ
ବିଧୂୟ ନିର୍ବାଣମୁପୈତ୍ୟନିନ୍ଧନମ୍ ॥ ୧୨

ତଦୈବମାତ୍ମନ୍ୟବରୁଦ୍ଧଚିତ୍ତୋ
ନ ବେଦ କିଞ୍ଚିଦ୍ ବହିରନ୍ତରଂ ବା ।
ଯଥେଷୁକାରୋ ନୃପତିଂ ବ୍ରଜନ୍ତ-
ମିଷୌ ଗତାତ୍ମା ନ ଦଦର୍ଶ ପାର୍ଶ୍ୱେ ॥ ୧୩

ଲଜ୍ଜାରୁ ରକ୍ଷା ପାଇବାକୁ ସେ ତା ହାତର ଶଙ୍ଖା କେତୋଟି ଭାଙ୍ଗିଦେଲା । ତଥାପି ଧାନ କୁଟିବାବେଳେ ଝମଝମ ଶବ୍ଦ ହେବାରୁ ହାତକେ ମାତ୍ର ଦୁଇଟି ଲେଖାଏଁ ଶଙ୍ଖା ରଖି ବାକିସବୁ ଭାଙ୍ଗିଦେଲା ॥ ୫-୭ ॥ ତଥାପି ଧାନ କୁଟିବାବେଳେ ଏକ ଆରେକରେ ବାଜି ସେହି ଦୁଇ ଦୁଇଟି ଶଙ୍ଖାରୁ ବି ଶବ୍ଦ ବାହାରିଲା । ତେଣୁ ସେ ପ୍ରତ୍ୟେକ ହାତରୁ ଆଉ ପଟେ ପଟେ ଶଙ୍ଖା ଭାଙ୍ଗିଦେଲା । ଏଥର ଦୁଇ ହାତରେ ମାତ୍ର ପଟେ ଲେଖାଏଁ ଶଙ୍ଖା ରହିଲା, ତେଣୁ ଧାନ କୁଟିବାବେଳେ ଆଉ ଶବ୍ଦ ହେଲା ନାହିଁ ॥ ୮ ॥

ହେ ରାଜନ୍ ! ଲୋକଙ୍କ ଗତିବିଧି ଜାଣିବା ଇଚ୍ଛାରେ ବୁଲୁ ବୁଲୁ ମୁଁ ଯାଇ ସେତେବେଳେ ସେଠାରେ ପହଞ୍ଚିଗଲି । କୁମାରୀକନ୍ୟାର ସେହି କାର୍ଯ୍ୟରୁ ମୁଁ ଶିକ୍ଷା ପାଇଲି ଯେ, **'ଯହିଁ ଅନେକ ଲୋକ ମିଳି । ଅବଶ୍ୟ ଉପୁଜଇ କଳି ॥'** ଏପରି କି ଦୁଇଜଣ ଲୋକ ଏକାଠି ରହିଲେ ବି, ବୃଥା ଗପସପ ଆରମ୍ଭ ହୋଇଯାଏ । ତେଣୁ ସେହି କୁମାରୀକନ୍ୟା ପଟେ ପଟେ ଚୁଡ଼ି ପିନ୍ଧିଲା ପରି ମନୁଷ୍ୟ ଏକାକୀ ବିଚରଣ କରିବା ଉଚିତ ॥ ୯,୧୦ ॥

ହେ ରାଜନ୍ ! (ମୁଁ ଶରନିର୍ମାଣ କରୁଥିବା କମାରଠାରୁ ଶିଖିଲି ଯେ,) ମନୁଷ୍ୟ ଆସନ ଓ ନିଃଶ୍ୱାସ-ପ୍ରଶ୍ୱାସ ଜୟ କରି (ଉଭୟରେ ସିଦ୍ଧ ହୋଇ) ବୈରାଗ୍ୟ ଓ ଅଭ୍ୟାସଦ୍ୱାରା ନିଜ ମନକୁ ବଶରେ ରଖିବା ଉଚିତ ଏବଂ ସେହି ବଶୀଭୂତ ମନକୁ ସାବଧାନତାର ସହିତ ଲକ୍ଷ୍ୟବସ୍ତୁରେ ଲଗାଇଦେବା ଆବଶ୍ୟକ ॥ ୧୧ ॥ ମନ ପରମାନନ୍ଦସ୍ୱରୂପ ପରମାତ୍ମାଙ୍କ ଠାରେ ସ୍ଥିର ହୋଇଗଲେ, ସେ ତାର କର୍ମବାସନାର ଧୂଳିସବୁକୁ ଧୀରେ ଧୀରେ ଝାଡ଼ିଦିଏ । ସେତେବେଳେ ତାର ସତ୍ତ୍ୱଗୁଣ ବୃଦ୍ଧି ହୁଏ ଏବଂ ସେ ରଜୋଗୁଣୀ ଓ ତମୋଗୁଣୀ ବୃତ୍ତିମାନ ପରିତ୍ୟାଗ କରିଦିଏ; ଫଳରେ ଜାଳେଣିଦ୍ରବ୍ୟର ଅଭାବରେ ଅଗ୍ନି ଲିଭିଗଲା ପରି ତାର ମନ ଶାନ୍ତ ହୋଇଯାଏ ॥ ୧୨ ॥ ଯାହାଙ୍କର ଚିତ୍ତ ଏପରିଭାବରେ ନିଜ ଆତ୍ମାରେ ହିଁ ସ୍ଥିର (ନିରୁଦ୍ଧ) ହୋଇଯାଏ, ତାଙ୍କର କି ବାହାର, କି ଭିତର କୌଣସି ବିଷୟର ଚିନ୍ତା ରହେ ନାହିଁ । ମୁଁ ଦେଖିଲି, ଜଣେ ଶରନିର୍ମାତା (କାରିଗର) ଶରନିର୍ମାଣ କର୍ମରେ ଏତେ ତନ୍ମୟ ହୋଇଯାଇଥିଲେ ଯେ, ତାଙ୍କ ଶାଳ ପାଖଦେଇ ସଦଳବଳେ ରାଜାଙ୍କର ଏକ ବିରାଟ ପଟୁଆର ଗ୍ଲିଗଲା, ଅଥଚ ତାଙ୍କୁ ଆଦୌ କିଛି ଜଣାପଡ଼ିଲା ନାହିଁ ॥ ୧୩ ॥

ଏକଗର୍ଯ୍ୟନିକେତଃ ସ୍ୟାଦପ୍ରମତ୍ତୋ ଗୁହାଶୟଃ ।
ଅଲକ୍ଷ୍ୟମାଣ ଆଗ୍ରୈର୍ମୁନିରେକୋଽଲ୍ପଭାଷଣଃ ॥ ୧୪

(ସାପର ଦୃଷ୍ଟାନ୍ତ ଦେଇ ସେ କହିଲେ,) ମୁନି ନିଜର ଗୋଷ୍ଠୀ ବା ମଣ୍ଡଳୀ ନ ଗଢ଼ି ଏକାକୀ ରହିବା ଉଚିତ । ସେ ବାସସ୍ଥାନ ପ୍ରତି ମମତା ନ ରଖି, ସାବଧାନ ହୋଇ, ଏକାନ୍ତରେ ବା ପର୍ବତକନ୍ଦରରେ ରହିବା ଉଚିତ । ସେ ନିଜର ଆଗ୍ରର-ବ୍ୟବହାରଦ୍ୱାରା ନିଜକୁ ଅନ୍ୟମାନଙ୍କ ନିକଟରେ ପ୍ରକାଶିତ (ପରିଚିତ) ନ କରି ମିତଭାଷୀ ହୋଇ ରହିବା ଉଚିତ ॥ ୧୪ ॥

ଗୃହାରମ୍ଭୋଽତିଦୁଃଖାୟ ବିଫଳଶ୍ଚାଧ୍ରୁବାତ୍ମନଃ ।
ସର୍ପଃ ପରକୃତଂ ବେଶ୍ମ ପ୍ରବିଶ୍ୟ ସୁଖମେଧତେ ॥ ୧୫

ଅନିତ୍ୟ ଶରୀର ନିମନ୍ତେ ଏତେ କଷ୍ଟ କରି ଘର ତୋଳିବା ନିରର୍ଥକ । ସାପ ଯେପରି ଯାଇ ମୂଷାଗାତ ଭିତରେ ଆରାମରେ ରହିଯାଏ, ମୁନି ସେହିପରି ଯେକୌଣସି ସ୍ଥାନରେ ରହି ଚଳିଯିବା ଉଚିତ ॥ ୧୫ ॥

ଏକୋ ନାରାୟଣୋ ଦେବଃ ପୂର୍ବସୃଷ୍ଟଂ ସ୍ୱମାୟୟା ।
ସଂହୃତ୍ୟ କାଳକଳୟା କଳ୍ପାନ୍ତ ଇଦମୀଶ୍ୱରଃ ॥ ୧୬

(ତା'ପରେ ବୁଢ଼ିଆଣୀର ଦୃଷ୍ଟାନ୍ତ ଦେଇ କହିଲେ,) ଏକମାତ୍ର ନାରାୟଣ ହିଁ ଏହି ସକଳ ବିଶ୍ୱ ସୃଷ୍ଟି କରିଛନ୍ତି ଏବଂ କଳ୍ପଶେଷରେ ନିଜର କାଳଶକ୍ତିଦ୍ୱାରା ସେ ହିଁ ଏହି ବିଶ୍ୱର ଉପସଂହାର ମଧ୍ୟ କରନ୍ତି ॥ ୧୬ ॥

ଏକ ଏବାଦ୍ୱିତୀୟୋଽଭୂଦାତ୍ମାଧାରୋଽଖିଳାଶ୍ରୟଃ ।
କାଳେନାତ୍ମାନୁଭାବେନ ସାମ୍ୟଂ ନୀତାସୁ ଶକ୍ତିଷୁ ।
ସତ୍ତ୍ୱାଦିଷ୍ୱାଦିପୁରୁଷଃ ପ୍ରଧାନପୁରୁଷେଶ୍ୱରଃ ॥ ୧୭

ସେହି ପରମାତ୍ମା ହେଉଛନ୍ତି ଏକ ଓ ଅଦ୍ୱିତୀୟ; ତେଣୁ ସେ ସ୍ୱଗତଭେଦରୁ ମଧ୍ୟ ରହିତ । ଏପରିଭାବରେ ସେହି ପରମାତ୍ମା ହେଉଛନ୍ତି ଅଖଣ୍ଡ ଓ ଅଦ୍ୱିତୀୟ । ସେ ହେଉଛନ୍ତି ସବୁରି ଆଶ୍ରୟସ୍ୱରୂପ । ସେ ସ୍ୱୟଂ ନିଜର ଆଧାର । ସେହି ଆଦିନାରାୟଣ ଭଗବାନ ହିଁ ହେଉଛନ୍ତି ପ୍ରକୃତି ଓ ପୁରୁଷ ଉଭୟର ନିୟାମକ । ସେ ଯେତେବେଳେ ନିଜର କାଳଶକ୍ତିଦ୍ୱାରା ଏହିସବୁ ସତ୍ତ୍ୱାଦି ଶକ୍ତିମାନଙ୍କୁ ସାମ୍ୟାବସ୍ଥାକୁ ନେଇଯାଆନ୍ତି, ସେତେବେଳେ ଏକମାତ୍ର ପରମାତ୍ମା ହିଁ ଅବଶେଷ ରହିଯାନ୍ତି ॥ ୧୭ ॥

ପରାବରାଣାଂ ପରମ ଆସ୍ତେ କୈବଲ୍ୟସଂଜ୍ଞିତଃ ।
କେବଲାନୁଭବାନନ୍ଦସନ୍ଦୋହୋ ନିରୁପାଧିକଃ ॥ ୧୮

ସେ ହେଉଛନ୍ତି ପରମ ଶ୍ରେଷ୍ଠ; ସେ ପରା ଓ ଅପରା ଉଭୟ ପ୍ରକୃତିର ଅତୀତ । ତାଙ୍କୁ କୈବଲ୍ୟ ନାମରେ ଉଲ୍ଲେଖ କରାଯାଏ । ସେ ହେଉଛନ୍ତି ନିରଞ୍ଜନ, ଅନୁଭବସ୍ୱରୂପ ଓ ଆନନ୍ଦର ପୁଞ୍ଜ । ତାଙ୍କ ଠାରେ ପ୍ରକୃତିର କୌଣସି ଉପାଧି ନ ଥାଏ; ସେ ନିରୁପାଧିକ ॥ ୧୮ ॥

କେବଲାତ୍ମାନୁଭାବେନ ସ୍ୱମାୟାଂ ତ୍ରିଗୁଣାତ୍ମିକାମ୍ ।
ସଂକ୍ଷୋଭୟନ୍ ସୃଜତ୍ୟାଦୌ ତୟା ସୂତ୍ରମରିନ୍ଦମ ॥ ୧୯

ସେ କେବଳ ନିଜର ସାମର୍ଥ୍ୟବଳରେ ହିଁ ତ୍ରିଗୁଣାତ୍ମିକା ମାୟାରେ କ୍ଷୋଭ (ଆଲୋଡ଼ନ) ସୃଷ୍ଟି କରନ୍ତି । ହେ ରାଜନ୍ ! ସେହି ମାୟାଦ୍ୱାରା ସେ ସର୍ବପ୍ରଥମେ କ୍ରିୟାଶକ୍ତିପ୍ରଧାନ ସୂତ୍ରାତ୍ମା (ମହତତ୍ତ୍ୱ) ସୃଷ୍ଟି କରନ୍ତି ॥ ୧୯ ॥

ତାମାହୁସ୍ତ୍ରିଗୁଣବ୍ୟକ୍ତିଂ ସୃଜନ୍ତୀଂ ବିଶ୍ୱତୋମୁଖମ୍ ।
ଯସ୍ମିନ୍ ପ୍ରୋତମିଦଂ ବିଶ୍ୱଂ ଯେନ ସଂସରତେ ପୁମାନ୍ ॥ ୨୦

ସେହି କ୍ରିୟାଶକ୍ତିପ୍ରଧାନ ସୂତ୍ରାତ୍ମା ହିଁ ତ୍ରିଗୁଣାତ୍ମିକା ଶକ୍ତିକୁ ଏବଂ ତିନିଗୁଣକୁ ଅଭିବ୍ୟକ୍ତ କରେ । ଏପରିଭାବରେ ତାହା ସମସ୍ତ ବିଶ୍ୱ ନିର୍ମାଣ କରେ । ତାହା ସମସ୍ତ ବିଶ୍ୱରେ ବ୍ୟାପ୍ତ ଏବଂ ସେଥିରେ ବ୍ୟାପ୍ତ ହୋଇ ଜୀବାତ୍ମା ଅହଂବୁଦ୍ଧି ଧରି ସଂସାରରେ ଘୂରିବୁଲୁଛି ॥ ୨୦ ॥

ଯଥୋର୍ଣ୍ଣନାଭିର୍ହୃଦୟାଦୂର୍ଣ୍ଣାଂ ସନ୍ତତ୍ୟ ବକ୍ତ୍ରତଃ ।
ତୟା ବିହୃତ୍ୟ ଭୂୟସ୍ତାଂ ଗ୍ରସତ୍ୟେବଂ ମହେଶ୍ୱରଃ ॥ ୨୧

ବୁଢ଼ିଆଣୀ ଯେପରି ନିଜ ହୃଦୟରୁ ଜାତ କରିଥିବା ସୂତାକୁ ମୁଖଦ୍ୱାରା ବିସ୍ତାର କରି ଜାଲ ପ୍ରସ୍ତୁତ କରେ, ସେଥିରେ ବିହାର କରେ ଏବଂ ଶେଷରେ ପୁଣି ତାହାକୁ ଗିଳିଦିଏ, ପରମେଶ୍ୱର ମଧ୍ୟ ସେହିପରି ନିଜ ଭିତରୁ ଜଗତ୍ ଉତ୍ପନ୍ନ କରନ୍ତି, ସେଥିରେ ଜୀବରୂପରେ ବିହାର କରନ୍ତି ଏବଂ ପୁଣିଥରେ ତାହାକୁ ନିଜ ଭିତରେ ଲୀନ କରିଦିଅନ୍ତି । ଏଥିରୁ ସାରତଃ ଏତିକି ବୁଝିବା ଉଚିତ ଯେ, ଏହି ବିଶ୍ୱ ହେଉଛି ପରମାତ୍ମାଙ୍କର ହିଁ ସ୍ୱରୂପ ॥ ୨୧ ॥

ଯତ୍ର ଯତ୍ର ମନୋ ଦେହୀ ଧାରୟେତ୍ ସକଳଂ ଧିୟା ।
ସ୍ନେହାଦ୍ ଦ୍ୱେଷାଦ୍ ଭୟାଦ୍ ବାପି ଯାତି ତତ୍ତତ୍ସରୂପତାମ୍ ॥ ୨୨

ହେ ରାଜନ୍ ! ମୁଁ ଭୃଙ୍ଗୀ ବା କୁମ୍ଭାରପୋକଠାରୁ ଏହି ଶିକ୍ଷା ପାଇଲି ଯେ, ଯଦି ପ୍ରାଣୀ ସ୍ନେହରେ, ଦ୍ୱେଷରେ ଅଥବା ଭୟରେ ହେଲେ ବି କାହାରିଠାରେ ଏକାଗ୍ରଭାବରେ ନିଜର ମନ ଲଗାଇଦେବ, ତେବେ ସେ ତାହାରି ପରି ରୂପ ପାଇଯିବ ॥ ୨୨ ॥ କୁମ୍ଭାରପୋକ ଅନ୍ୟ କୀଟକୁ ଧରି ଆଣି ନିଜ ଗାତ ଭିତରେ ତାକୁ ବନ୍ଦ କରି ରଖେ ଏବଂ ବାରମ୍ବାର ସେଠାକୁ ଆସି ତାକୁ ଭୁଁ ଭୁଁ କରି ଡରାଏ । ସେଥିରେ ଭୟଭୀତ ହୋଇ କୀଟଟି କୁମ୍ଭାରପୋକ ରୂପକୁ ଅନବରତ ଚିନ୍ତା କରେ । ତେଣୁ ସେ ତା'ର ଦେହତ୍ୟାଗ ନ କରି ସେହି ଶରୀରରେ ହିଁ ତଦ୍ରୂପ (ଭୃଙ୍ଗୀରୂପ) ହୋଇଯାଏ । ସୁତରାଂ ଯେକୌଣସି ପ୍ରକାରେ ପରମାତ୍ମାଙ୍କୁ ଚିନ୍ତନ କରିଚାଲିଲେ ମଧ୍ୟ ମନୁଷ୍ୟ ପରମାତ୍ମାଙ୍କୁ ଅବଶ୍ୟ ପାଇଯିବ ॥ ୨୩ ॥

କୀଟଃ ପେଶସ୍କୃତଂ ଧ୍ୟାୟନ୍ କୁଡ୍ୟାଂ ତେନ ପ୍ରବେଶିତଃ ।
ଯାତି ତତ୍ସାତ୍ମତାଂ ରାଜନ୍ ପୂର୍ବରୂପମସନ୍ତ୍ୟଜନ୍ ॥ ୨୩

ଏବଂ ଗୁରୁଭ୍ୟ ଏତେଭ୍ୟ ଏଷା ମେ ଶିକ୍ଷିତା ମତିଃ ।
ସ୍ୱାତ୍ମୋପଶିକ୍ଷିତାଂ ବୁଦ୍ଧିଂ ଶୃଣୁ ମେ ବଦତଃ ପ୍ରଭୋ ॥ ୨୪

ହେ ରାଜନ୍ ! ଉପରୋକ୍ତ ଗୁରୁମାନଙ୍କ ଠାରୁ ମୁଁ ଏହିସବୁ ଶିକ୍ଷା ଗ୍ରହଣ କରିଛି । ଏଥର ମୁଁ ମୋ ଶରୀରରୁ ଯେଉଁ ଶିକ୍ଷା ପାଇଛି, ତାହା କହୁଛି; ମନ ଦେଇ ଶୁଣନ୍ତୁ ॥ ୨୪ ॥ ମୋର ଏହି ଦେହ ମଧ୍ୟ ମୋର ଗୁରୁ । ଏ ଦେହ ମୋତେ ବୈରାଗ୍ୟ ଓ ବିବେକ ଉପଦେଶ ଦିଏ । ଏକଥା ପ୍ରସିଦ୍ଧ ଯେ, ଦେହ ହେଉଛି ଜନ୍ମମରଣଶୀଳ । ପରିଣାମରେ ଦେହ ସହିତ ଦୁଃଖ ହିଁ ଲାଗିରହିଛି । କିନ୍ତୁ ଏ ଦେହରୁ ଯେଉଁ ସବୁଠାରୁ ବଡ଼ ଲାଭଟି ମିଳେ, ତାହା ହେଲା, ଏହି ଦେହରେ ହିଁ ଆମେ ପରମାତ୍ମଚିନ୍ତନ କରିପାରୁ । ଏହା ନିଃସନ୍ଦେହ ଯେ, ଏ ଦେହକୁ ଦିନେ ବିଲୁଆ-କୁକୁର ଖାଇଯିବେ; ତେଣୁ ଏହା ଆମର ନୁହେଁ, ଅନ୍ୟମାନଙ୍କର । ସେଥିପାଇଁ ମୁଁ ଏ ଦେହ ପ୍ରତି ମଧ୍ୟ ଅସଙ୍ଗ ହୋଇ ବିଚରଣ କରୁଛି ॥ ୨୫ ॥ ମନୁଷ୍ୟ ଏ ଦେହରେ ସ୍ତ୍ରୀ, ପୁତ୍ର, ଧନସମ୍ପଦ, ପଶୁ, ଭୃତ୍ୟ, ଘରଦ୍ୱାର, ବନ୍ଧୁବାନ୍ଧବ ବଢ଼ାଇ ସେଥିରୁ ସୁଖ ପାଇବାର ଇଚ୍ଛା ରଖେ; ତେଣୁ ସେମାନଙ୍କୁ ପାଳିପୋଷି ବହୁ କଷ୍ଟରେ ଧନସମ୍ପଦ ସଞ୍ଚୟ

ଦେହୋ ଗୁରୁର୍ମମ ବିରକ୍ତିବିବେକହେତୁ-
ର୍ବିଭ୍ରତ୍ ସ୍ମ ସତ୍ତ୍ୱନିଧନଂ ସତତାର୍ତ୍ତ୍ୟୁଦର୍କମ୍ ।
ତତ୍ତ୍ୱାନ୍ୟନେନ ବିମୃଶାମି ଯଥା ତଥାପି
ପାରକ୍ୟମିତ୍ୟବସିତୋ ବିଚରାମ୍ୟସଙ୍ଗଃ ॥ ୨୫

ଜାୟାତ୍ମଜାର୍ଥପଶୁଭୃତ୍ୟଗୃହାପ୍ତବର୍ଗାନ୍
ପୁଷ୍ଣାତି ଯତ୍ପ୍ରିୟଚିକୀର୍ଷୁତୟା ବିତନ୍ୱନ୍ ।

ସ୍ୱାନ୍ତେ ସକୃଚ୍ଛ୍ରମବରୁଦ୍ଧଧନଃ ସ ଦେହଃ
ସୃଷ୍ଟ୍ୱାସ୍ୟ ବୀଜମବସୀଦତି ବୃକ୍ଷଧର୍ମା ॥ ୨୬

କରେ। କିନ୍ତୁ ବୃକ୍ଷ ଯେପରି ବୀଜ ଉତ୍ପନ୍ନ କରି ନଷ୍ଟ ହୋଇଯାଏ, ଏ ଦେହ ଆଗାମୀ ଜନ୍ମ ପାଇଁ ବୀଜ ପ୍ରସ୍ତୁତ କରି ନିଜେ ନଷ୍ଟ ହୋଇଯାଏ। ଦେହ ବିନଷ୍ଟ ହୋଇଗଲେ ମଧ୍ୟ ଜୀବର ଦୁଃଖନାଶ ହୁଏ ନାହିଁ। ସେ ଜନ୍ମମୃତ୍ୟୁର ଚକ୍ରରେ ପଡ଼ି ଘୂରୁଥାଏ ॥ ୨୬ ॥ ସଉତୁଣୀମାନେ ଯେପରି ତାଙ୍କର ବହୁପତ୍ନୀକ ସ୍ୱାମୀକୁ ନିଜ ନିଜ ଆଡ଼କୁ ଆକର୍ଷଣ କରି ତାର ସର୍ବନାଶ କରିଦିଅନ୍ତି, ଇନ୍ଦ୍ରିୟମାନେ ସେହିପରି ଦେହାଭିମାନୀ ଜୀବକୁ ନିଜ ନିଜର ବିଷୟ ଆଡ଼କୁ ଆକର୍ଷିତ କରି ତାର ପତନ ଘଟାନ୍ତି। ଏପଟେ ଜିହ୍ୱା ଆକର୍ଷଣ କରେ ତ, ସେପଟେ ତୃଷା ଦୁଃଖ ଦିଏ, ପୁଣି ଆଉ ଏକ ପଟେ ଜନନେନ୍ଦ୍ରିୟ ସମ୍ଭୋଗ ପାଇଁ ଅଥୟ କରିପକାଏ। ଏହାଛଡ଼ା ଚର୍ମ, ଉଦର, କର୍ଣ୍ଣ—ପ୍ରତ୍ୟେକେ ଜୀବକୁ ନିଜ ନିଜର ବିଷୟ ଆଡ଼କୁ ଟାଣିନିଅନ୍ତି। ନାକ ସୁଗନ୍ଧ ଆଡ଼କୁ ଟାଣେ ତ, ଚଞ୍ଚଳ ନୟନ ସୁନ୍ଦର ରୂପ ଦେଖିବାକୁ ଟାଣେ। ଏପରିଭାବରେ ଦେହାଭିମାନୀ ଜୀବକୁ କର୍ମେନ୍ଦ୍ରିୟ ଓ ଜ୍ଞାନେନ୍ଦ୍ରିୟ ଉଭୟେ ନିଜ ନିଜ ବିଷୟ ଆଡ଼କୁ ଟାଣି ହଇରାଣ କରନ୍ତି ॥ ୨୭ ॥

ଜିହ୍ୱୈକତୋଽମୁମପକର୍ଷତି କର୍ହି ତର୍ଷା
ଶିଶ୍ନୋଽନ୍ୟତସ୍ତ୍ୱଗୁଦରଂ ଶ୍ରବଣଂ କୁତଶ୍ଚିତ୍।
ଘ୍ରାଣୋଽନ୍ୟତଶ୍ଚପଲଦୃକ୍ କ୍ୱ ଚ କର୍ମଶକ୍ତି-
ର୍ବହ୍ୱ୍ୟଃ ସପତ୍ନ୍ୟ ଇବ ଗେହପତିଂ ଲୁନନ୍ତି ॥ ୨୭

ଭଗବାନ ନିଜର ଅଚିନ୍ତ୍ୟ ଶକ୍ତି ମାୟାଦ୍ୱାରା ପ୍ରଥମେ ବୃକ୍ଷ, ସରୀସୃପ, ପଶୁ, ପକ୍ଷୀ, ପତଙ୍ଗ, ମତ୍ସ୍ୟ ଆଦି ଅନେକ ପ୍ରକାର ଯୋନିର ପ୍ରାଣୀ ସୃଷ୍ଟି କଲେ; କିନ୍ତୁ ସେଥିରୁ ତାଙ୍କୁ ସନ୍ତୋଷ ମିଳିଲା ନାହିଁ। ତେଣୁ ସେ ମନୁଷ୍ୟକୁ ସୃଷ୍ଟି କଲେ। ମନୁଷ୍ୟକୁ ଏଭଳି ବୁଦ୍ଧି ମିଳିଛି, ଯାହାବଳରେ କି ସେ ବ୍ରହ୍ମସାକ୍ଷାତ୍କାର କରିପାରେ। ମନୁଷ୍ୟକୁ ସୃଷ୍ଟି କରି ପ୍ରଭୁ ବିଶେଷ ଆନନ୍ଦିତ ହେଲେ ॥ ୨୮ ॥

ସୃଷ୍ଟ୍ୱା ପୁରାଣି ବିବିଧାନ୍ୟଜୟାଽଽତ୍ମଶକ୍ତ୍ୟା
ବୃକ୍ଷାନ୍ ସରୀସୃପପଶୂନ୍ ଖଗଦଂଶମତ୍ସ୍ୟାନ୍।
ତୈସ୍ତୈରତୁଷ୍ଟହୃଦୟଃ ପୁରୁଷଂ ବିଧାୟ
ବ୍ରହ୍ମାବଲୋକଧିଷଣଂ ମୁଦମାପ ଦେବଃ ॥ ୨୮

ମନୁଷ୍ୟଶରୀର ଅନିତ୍ୟ ହୋଇଥିଲେ ମଧ୍ୟ ଏହା ଅତ୍ୟନ୍ତ ଦୁର୍ଲଭ। ଏହା ବହୁଜନ୍ମ ପରେ ଭଗବାନଙ୍କର ଅସୀମ କୃପାରୁ ମିଳିଛି। ଏହି ଶରୀରଦ୍ୱାରା ପରମ ପୁରୁଷାର୍ଥସ୍ୱରୂପ ପରମାତ୍ମା ମିଳିପାରନ୍ତି। ଏପରି ଅମୂଲ୍ୟ ମନୁଷ୍ୟଜନ୍ମ ମିଳିଛି ମାନେ ମୃତ୍ୟୁ ବା କାଳ ଆସି ଏହାକୁ କବଳିତ କରିଦେବା ପୂର୍ବରୁ ଶୀଘ୍ର ଶୀଘ୍ର ଭଗବତ୍‌ପ୍ରାପ୍ତିରୂପୀ ପରମ ଲାଭ ପାଇବାକୁ ଚେଷ୍ଟା କରିବା ଉଚିତ। ଏଇଥିରେ ହିଁ ମନୁଷ୍ୟର ମନୁଷ୍ୟତା ନିହିତ; କାରଣ ବିଷୟଭୋଗ ତ ସବୁଯୋନିରେ ମିଳିପାରିବ; ତା'ପଛରେ ଧାଇଁ ନିଜର ଅମୂଲ୍ୟ ସମୟ ନଷ୍ଟ କରିବା ଉଚିତ ନୁହେଁ॥ ୨୯ ॥

ଲବ୍ଧ୍ୱା ସୁଦୁର୍ଲଭମିଦଂ ବହୁସମ୍ଭବାନ୍ତେ
ମାନୁଷ୍ୟମର୍ଥଦମନିତ୍ୟମପୀହ ଧୀରଃ।
ତୂର୍ଣ୍ଣଂ ଯତେତ ନ ପତେଦନୁମୃତ୍ୟୁ ଯାବ-
ନ୍ନିଃଶ୍ରେୟସାୟ ବିଷୟଃ ଖଲୁ ସର୍ବତଃ ସ୍ୟାତ୍ ॥ ୨୯

ହେ ରାଜନ୍ ! ଏପରି ବିଭିନ୍ନ ଶିକ୍ଷା ପାଇ ମୋର ବୈରାଗ୍ୟ ଜାତ ହୋଇଗଲା ଓ ମୋ ଅନ୍ତଃକରଣରେ ବିଜ୍ଞାନର ଆଲୋକ ଖେଳିଗଲା। ମୁଁ ବର୍ତ୍ତମାନ ଅହଂକାର ତ୍ୟାଗ କରିଦେଇ ସ୍ୱଚ୍ଛନ୍ଦରେ ଭୂତଳରେ ବିଚରଣ କରୁଛି ॥ ୩୦ ॥

ଏବଂ ସଞ୍ଜାତବୈରାଗ୍ୟୋ ବିଜ୍ଞାନାଲୋକ ଆତ୍ମନି।
ବିଚରାମି ମହୀମେତାଂ ମୁକ୍ତସଙ୍ଗୋଽନହଙ୍କୃତିଃ ॥ ୩୦

ନ ହ୍ୟେକସ୍ମାଦ୍ ଗୁରୋର୍ଜ୍ଞାନଂ ସୁସ୍ଥିରଂ ସ୍ୟାତ୍ ସୁପୁଷ୍କଳମ୍ ।

ବ୍ରହ୍ମୈତଦଦ୍ୱିତୀୟଂ ବୈ ଗୀୟତେ ବହୁଧର୍ଷିଭିଃ ॥ ୩୧

ରାଜନ୍ ! କେବଳ ଗୁରୁଙ୍କ ଠାରୁ ଯଥେଷ୍ଟ ଜ୍ଞାନ ହୋଇପାରେ ନାହିଁ କି ସୁଦୃଢ଼ ବୋଧ ହୋଇପାରେ ନାହିଁ। ନିଜ ବୁଦ୍ଧିବଳରେ ମଧ୍ୟ କିଛି ବିଗ୍ଚର କରିବା ଆବଶ୍ୟକ। ବାସ୍ତବରେ ଦେଖିବାକୁ ଗଲେ ଏକମାତ୍ର ଅଦ୍ୱିତୀୟ ବ୍ରହ୍ମଙ୍କ ବିଷୟରେ ହିଁ ଋଷିମାନେ ଅନେକ ପ୍ରକାରେ ବର୍ଣ୍ଣନା କରିଛନ୍ତି। (ତେଣୁ ତୁମେ ନିଜେ ବିଗ୍ଚର ନ କଲେ ବ୍ରହ୍ମର ବାସ୍ତବିକ ସ୍ୱରୂପ ବିଷୟରେ ଜାଣିବ କିପରି ?) ॥ ୩୧ ॥

*ଶ୍ରୀଭଗବାନୁବାଚ*

ଇତ୍ୟୁକ୍ତ୍ୱା ସ ଯଦୁଂ ବିପ୍ରସ୍ତମାମନ୍ତ୍ର୍ୟ ଗଭୀରଧୀଃ ।

ବନ୍ଦିତୋଽଭ୍ୟର୍ଥିତୋ ରାଜ୍ଞା ଯଯୌ ପ୍ରୀତୋ ଯଥାଗତମ୍ ॥ ୩୨

ଅବଧୂତବଚଃ ଶ୍ରୁତ୍ୱା ପୂର୍ବେଷାଂ ନଃ ସ ପୂର୍ବଜଃ ।

ସର୍ବସଙ୍ଗବିନିର୍ମୁକ୍ତଃ ସମଚିତ୍ତୋ ବଭୂବ ହ ॥ ୩୩

**ଭଗବାନ ଶ୍ରୀକୃଷ୍ଣ କହିଲେ**—ପ୍ରିୟ ଉଦ୍ଧବ ! ଗଭୀରବୁଦ୍ଧି ଦତ୍ତାତ୍ରେୟ ରାଜା ଯଦୁଙ୍କୁ ଏପରି ଉପଦେଶ ଦେବାରୁ ଯଦୁ ତାଙ୍କୁ ପୂଜା କରି ବନ୍ଦନା କଲେ । ତା'ପରେ ରାଜାଙ୍କ ଠାରୁ ଅନୁମତି ନେଇ ଅବଧୂତ ଦତ୍ତାତ୍ରେୟ ପ୍ରସନ୍ନଚିତ୍ତରେ ସେଠାରୁ ଗ୍ଚଲିଗଲେ । ଆମ ପୂର୍ବଜମାନଙ୍କର ମଧ୍ୟ ପୂର୍ବଜ ରାଜା ଯଦୁ ଦତ୍ତାତ୍ରେୟଙ୍କର କଥା ଶୁଣି ସମସ୍ତ ଆସକ୍ତି ପରିତ୍ୟାଗପୂର୍ବକ ସମଦର୍ଶୀ ହୋଇଗଲେ । (ତାଙ୍କରି ଭଳି ତୁମେ ମଧ୍ୟ ଆସକ୍ତି ପରିତ୍ୟାଗ କରି ସମଦର୍ଶୀ ହୋଇଯିବା ଉଚିତ ।) ॥ ୩୨,୩୩ ॥

*ଇତି ଶ୍ରୀମଦ୍ଭାଗବତେ ମହାପୁରାଣେ ପାରମହଂସ୍ୟାଂ ସଂହିତାୟାମେକାଦଶସ୍କନ୍ଧେ ନବମୋଽଧ୍ୟାୟଃ ॥ ୯ ॥*

